ଅମର ଜୀବନୀମାଳା

# କବିବର ରାଧାନାଥ

ଲେଖକ :—

ଲାଲ୍ ନଗେନ୍ଦ୍ର କୁମାର ରାୟ୍

ପ୍ରାପ୍ତିସ୍ଥାନ :—

ଦି ଉତ୍କଳ ଷ୍ଟୋର୍ସ

ବାଲୁବଜାର, କଟକ—୨

ପ୍ରକାଶକ :—

ଉତ୍କଳ-ପ୍ରକାଶନୀ

କଟକ—୧

ପ୍ରଥମ ସଂସ୍କରଣ

୧୯୫୭

ମୂଲ୍ୟ ଟ ୦ ।୵

ମୁଦ୍ରାକର—

ଶ୍ରୀ ପଦ୍ମଚରଣ ଦାଶ

ଶ୍ରୀ ସତ୍ୟନାରାୟଣ ପ୍ରେସ

ଓଗରପଣ୍ଡା, କଟକ—୨

# କବିବର ରାଧାନାଥ



ଆମ ଭାରତବର୍ଷରେ ଆଜିକାଲି ଯେତେ ରକମର ଭାଷା ଚାଲୁଅଛି ତନ୍ମଧ୍ୟରେ ଓଡ଼ିଆ ଭାଷା ଗୋଟିଏ । ବଙ୍ଗଳା, ହିନ୍ଦି ପ୍ରଭୃତି ପରି ଓଡ଼ିଆ ଭାଷା ମଧ୍ୟ ପ୍ରାକୃତ ଭାଷାରୁ ବାହାରିଅଛି; ମାତ୍ର କେବେ ଏହାଲି ସ୍ୱତନ୍ତ୍ର ହୋଇଥିଲା, ସେ କଥା ସଠିକ୍‌ଭାବେ କହି ହେବନାହିଁ । ପଣ୍ଡିତମାନେ ସ୍ଥିର କରିଅଛନ୍ତି ଯେ ସପ୍ତମ ବା ଅଷ୍ଟମ ଶତାବ୍ଦୀ ବେଳକୁ ଓଡ଼ିଆ ଗୋଟିଏ ସ୍ୱତନ୍ତ୍ର ଭାଷା ହିସାବରେ ଚଳୁଥିଲା । ଏହି ଭାଷାର ସବୁଠାରୁ ବଡ଼ ବହି ହେଉଛି ଶାରଳା ଦାସଙ୍କ ମହାଭାରତ । ଏହା ପୁରୁଷୋତ୍ତମ ଦେବଙ୍କ ସମୟରେ ରଚିତ ହୋଇଥିଲା । ଏହା ପୂର୍ବରୁ ମଧ୍ୟ ଅନ୍ୟ ଅନେକ ବହି ଓଡ଼ିଆରେ ରଚିତ ହୋଇଥିବାର ପ୍ରମାଣ ଅଛି । ପ୍ରତାପରୁଦ୍ର ଦେବଙ୍କ ଅମଳରେ ବଙ୍ଗଳାରୁ ଶ୍ରୀ ଚୈତନ୍ୟ ଓଡ଼ିଶାକୁ ଆସିଥିଲେ ଏବଂ ସେତେବେଳେ ଶତ ଶତ ବଙ୍ଗାଳୀ ଓଡ଼ିଶାରେ ଆସି ରହିଥିଲେ । ପ୍ରତାପରୁଦ୍ରଙ୍କ ଅମଳରେ ଓଡ଼ିଆ ଭାଷା ଅତ୍ୟନ୍ତ ଉନ୍ନତ ଲାଭ କରିଥିଲା ଏବଂ ସେହି ଅମଳରେ ଓଡ଼ିଆରେ ଅନେକ କାବ୍ୟ ଓ ପୁରାଣମାନ ଲେଖାଯାଇଥିଲା ।

ଓଡ଼ିଶାର ସ୍ୱାଧୀନତା ଲୋପ ପରେ ମୋଗଲ, ପଠାଣ, ମରହଟ୍ଟା ମାନେ ଓଡ଼ିଶା ଦଖଲ କରି ଦେଶଟାକୁ ଲଣ୍ଡଭଣ୍ଡ କରି ଦେଇଥିଲେ । ତଥାପି ଏତେବେଳେ ମଧ୍ୟ ଅସଂଖ୍ୟ ଉପାଦେୟ ଓଡ଼ିଆ ବହି ଲେଖା ହୋଇଥିଲା ଏବଂ ଏହା ଆମ ଜାତିର ଅମୂଲ୍ୟ ସମ୍ପତ୍ତି ହୋଇ

ରହିଥିଲା । ଏହା ପରେ ୧୮୦୩ ଖ୍ରୀଷ୍ଟାବ୍ଦରୁ ଓଡ଼ିଶା ଇଂରେଜ ଅଧୀନକୁ ଗଲା ଏବଂ ବଙ୍ଗଳା ଲାଟଙ୍କ ଶାସନରେ ରହିଲା । ମୁସଲମାନ ଆମଳରେ ଯେମିତି ଅନେକ ବଙ୍ଗାଳୀ କର୍ମଚାରୀ ଓଡ଼ିଶାକୁ ଆସିଥିଲେ ଇଂରେଜ ଆମଳରେ ମଧ୍ୟ ସେହିପରି ଅନେକେ ସରକାରୀ କାମରେ ଆସିଲେ । ଓଡ଼ିଆମାନେ ଇଂରେଜ ଆମଳରେ ଶିକ୍ଷା ଦୀକ୍ଷାରେ ବହୁତ ପଛରେ ପଡ଼ିଗଲେ ଏବଂ ତାଙ୍କ ସଙ୍ଗେ ସଙ୍ଗେ ଓଡ଼ିଆ ଭାଷାର ଅବନତି ଘଟିଲା । ବଙ୍ଗାଳୀଙ୍କ ପ୍ରାଧାନ୍ୟ ଆମ ଦେଶରେ ବଢ଼ି ଯିବାରୁ ଥୋକେ ବଙ୍ଗାଳୀ ଓଡ଼ିଆ ଭାଷାକୁ ବଙ୍ଗଳାର ଶାଖା ବୋଲି ପ୍ରଚାର କରି ଲୋପ କରି ଦେବାକୁ ବସିଥିଲେ । ଏତେବେଳକୁ ଇଂରେଜୀ ଶିକ୍ଷା ସଭ୍ୟତାର ଯୁଗ । କେହି ଓଡ଼ିଆ ସେମିତି ଉଚ୍ଚ ଶିକ୍ଷିତ ନ ଥିଲେ କିମ୍ବା ଓଡ଼ିଆଙ୍କ ପାଇଁ ଲଢ଼ିବାକୁ ମିଳିତ ଓ ବଳିଷ୍ଠ ଜନମତ ବା ସମ୍ବାଦପତ୍ର ନ ଥିଲା । ବିଦ୍ୟାଳୟରେ ପଢ଼ିବା ପାଇଁ ସେଭଳି ଭଲ ପାଠ୍ୟ ପୁସ୍ତକ ମଧ୍ୟ ନ ଥିଲା । ଯାହା ଥିଲା ସବୁ ପୁରୁଣା କାବ୍ୟ ପୁରାଣ, ଚୌପଦୀ ଓ ଚୌତିଶାମାନ । ଅଥଚ ବଙ୍ଗଳା ଭାଷା ସୃଷ୍ଟି ହେବାର ଏବଂ ତହିଁରେ ଭଲ ବହି ଲେଖା ହେବାର ବହୁ ଶତ ବର୍ଷ ପୂର୍ବରୁ ଓଡ଼ିଆ ସାହିତ୍ୟ ଅତ୍ୟନ୍ତ ସମୃଦ୍ଧି ଲାଭ କରିଥିବାର ଅକାଟ୍ୟ ଯୁକ୍ତି ଓ ପ୍ରମାଣ ବିଦ୍ୟମାନ ।

ଓଡ଼ିଆ ଭାଷାର ଏହିଭଳି ଘୋର ସଙ୍କଟବେଳେ ଯେଉଁମାନେ ଚେଷ୍ଟା ଉଦ୍ୟମ କରି ଓଡ଼ିଆ ଭାଷାର ଅସ୍ତିତ୍ୱ ରକ୍ଷା କରିଥିଲେ ଏବଂ ଓଡ଼ିଆରେ କାବ୍ୟ ପୁରାଣ ଲେଖି ଭାଷାକୁ ନବୀନ ରୂପ ରେଖ ଓ ପ୍ରାଣଶକ୍ତି ଦେଇ ପାରିଥିଲେ ସେମାନେ ପ୍ରତି ଓଡ଼ିଆ ପୁଅର ନମସ୍ୟ ବ୍ୟକ୍ତି । କବିବର ରାଧାନାଥ ଏହିମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଏବଂ ଅଗ୍ରଣୀ ଅଟନ୍ତି । ରାଧାନାଥ ନିଜେ ବଙ୍ଗାଳୀ ହେଲେ ହେଁ ଊନବିଂଶ ଶତାବ୍ଦୀର ସର୍ବଶ୍ରେଷ୍ଠ ଓଡ଼ିଆ କବି ଏବଂ ତାଙ୍କ ଲେଖାକୁ

ଛପିବା ଭଳି ଉତ୍କୃଷ୍ଟ ଓ ସରସ ରଚନା ଅଜ ସୁଦ୍ଧା ଓଡ଼ିଆ ଭାଷାରେ ଦେଖିବାକୁ ମିଳେ ନାହିଁ । ତାଙ୍କର ଜୀବଦ୍ଦଶାରେ ଓଡ଼ିଶାର କେତେକ ଓ ଇଚ୍ଛାଧନ୍ୟ ନାଟକ ବୁଝ ଖଣ୍ଡେ ପଢ଼ି ତାଙ୍କୁ ଉପେନ୍ଦ୍ର ଭଞ୍ଜଙ୍କ ଅପେକ୍ଷା ଶ୍ରେଷ୍ଠ ପ୍ରମାଣ କରିବାକୁ ବିତର୍କ କରିବା ଦେଖି ରାଧାନାଥ ନିଜେ ଲେଖିଥିଲେ ଯେ ସେ ଉପେନ୍ଦ୍ରଭଞ୍ଜଙ୍କର ଅନୁଗତ ଭକ୍ତ ମାତ୍ର । ନିମ୍ନରେ ଏହି ମହାପ୍ରାଣ ବ୍ୟକ୍ତିଙ୍କର ଜୀବନୀ ସଂକ୍ଷେପରେ ଦିଆଯାଉଅଛି; କିନ୍ତୁ ତତ୍ପୂର୍ବରୁ ତାଙ୍କ ବଂଶର କିଛି ପରିଚୟ ଦିଆ ଆବଶ୍ୟକ ।

## ବଂଶ ପରିଚୟ

ପୂର୍ବରୁ କୁହାଯାଇଅଛି ଯେ ମୋଗଲ ଅମଳଠାରୁ ଇଂରେଜ ଅମଳଯାଏ ବହୁତ ବଙ୍ଗାଳୀ ବଙ୍ଗଳାରୁ ଆସି ଓଡ଼ିଶାରେ ବସତି କରିଥିଲେ । ବାଲେଶ୍ୱର ଜିଲାର କାଞ୍ଚନପୁର ରାୟ ମହାଶୟ ବଂଶ ସେମାନଙ୍କ ମଧ୍ୟରେ ଖୁବ ସମ୍ଭ୍ରାନ୍ତ । ବାଲେଶ୍ୱରର ପ୍ରାୟ ୧୦ କୋଶ ଦକ୍ଷିଣକୁ ଅବସ୍ଥିତ ସୋର ଗ୍ରାମ ପର୍ଯ୍ୟନ୍ତ ଏମାନଙ୍କର ଜମିଦାରୀ ବିସ୍ତୃତ ଥିଲା ଏବଂ ଏହି ଜମିଦାର ବଂଶରୁ ପୂର୍ଣ୍ଣାନନ୍ଦ ରାୟ ନାମକ ଜଣେ ଆସି ସୋର ନିକଟରେ ଘର କରି ରହିଥିଲେ ଏବଂ ସ୍ଥାନଟିର ନାମ ଦେଇଥିଲେ ରାୟପୁର ।

ପୂର୍ଣ୍ଣାନନ୍ଦଙ୍କ ନାତି ହେଉଛନ୍ତି ଜୟନାରାୟଣ ଏବଂ ତାଙ୍କର ନାତୁଣୀ ହେଉଛନ୍ତି ତାରିଣୀ ଦାସୀ ଯେ କି ରାଧାନାଥଙ୍କର ଗର୍ଭଧାରିଣୀ ଥିଲେ । ରାଧାନାଥଙ୍କର ପୂର୍ବପୁରୁଷ ମେଦିନୀପୁର ଜିଲା ଅନ୍ତର୍ଗତ ରାଧାନଗରରେ ରହୁଥିଲେ । ସେମାନେ ଦକ୍ଷିଣ ରାଢ଼ୀ କାୟସ୍ଥ ଏବଂ ତାଙ୍କର ଉପାଧି ଥିଲା ଦେ । କେଦାରପୁରର ପ୍ରାୟ ୧୦ କୋଶ ଦୂରରେ ଦଶମଲଙ୍ଗ ବୋଲି ଗୋଟିଏ ଗାଁ ଅଛି । ଦେ ବଂଶ ସେହିଠାରେ ରହୁଥିଲେ । ଏହି ଦେ ବଂଶର ନାରାୟଣପ୍ରସାଦ ଜଣେ

ପ୍ରସିଦ୍ଧ ପାର୍ସି ପଣ୍ଡିତ ଥିଲେ । ତାଙ୍କୁ ରାଜନାରାୟଣ ରାୟ ଆଣାଇ ଆପଣା ଗ୍ରାମରେ ରଖାଇଲେ ଏବଂ ରାୟ ପଦବୀ ଦେଇଥିଲେ । ନାରାୟଣ ପ୍ରସାଦଙ୍କର ଚାରି ଗୋଟି ସନ୍ତାନ ହୋଇଥିଲେ । ସେଥି ମଧ୍ୟରୁ ବଡ଼ ପୁଅର ନାମ ହେଉଛନ୍ତି ସୁନ୍ଦରନାରାୟଣ ରାୟ । ଏହି ସୁନ୍ଦର ନାରାୟଣ ହେଉଛନ୍ତି ରାଧାନାଥଙ୍କର ପିତା ।

ସେହି ସମୟରେ ସୋର ଗ୍ରାମରେ ଟିକୁ ମିଆଁ ନାମକ ଜଣେ ଭଲ ପାର୍ସି ଶିକ୍ଷକ ଥିଲେ । ସୁନ୍ଦରନାରାୟଣ ଏହାଙ୍କଠାରୁ ଶିକ୍ଷା ପାଇ ଥିଲେ । ଏହା ଛଡ଼ା ଓଡ଼ିଆ ଓ ବଙ୍ଗଳାରେ ମଧ୍ୟ ସେ ଭଲ ଜ୍ଞାନ ଅର୍ଜନ କରି ବାଲେଶ୍ୱର କଲେକ୍ଟରୀ କଚେରୀରେ ସଦର କାନୁନଗୋଇ କାମ କରୁଥିଲେ । ତାଙ୍କର ଅନ୍ୟ ଭାଇମାନେ ମଧ୍ୟ ସରକାରୀ ଚାକିରି କରିବାରୁ ପରିବାରର ସମୃଦ୍ଧି ବଢ଼ିଥିଲା । ଏଣୁ ଜନୈକ ତାରିଣୀ ଦାସୀଙ୍କ ସହିତ ସୁନ୍ଦର ନାରାୟଣଙ୍କ ବିବାହ ହୋଇ ପାରିଥିଲା । ଏହି ବିବାହର ଫଳ ହେଉଛନ୍ତି ରାଧାନାଥଙ୍କ ଜନ୍ମ ।

## ଜନ୍ମକାଳ

୧୮୪୮ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ମାସ ୨୮ ତାରିଖ ଅର୍ଥାତ୍ ଆଶ୍ୱିନ ୧୫ ଦିନ ୧୭୭୧ ଶକାବ୍ଦରେ ରାଧାନାଥଙ୍କର ଜନ୍ମ ହୋଇଥିଲା । ଓଡ଼ିଆ ଅଙ୍କରେ ଏହା ହେଉଛି ରାମଚନ୍ଦ୍ର ଦେବଙ୍କ ୩୯ ଅଙ୍କ ସନ ୧୨୫୬ ସାଲ କନ୍ୟା ୧୫ ଦିନ ଶୁକ୍ଳପକ୍ଷ ଦ୍ୱିତୀୟା ଗୁରୁବାର ରାତ୍ରି ୭ ଦଣ୍ଡ ।

ଅତି ଶୈଶବରେ ରାଧାନାଥଙ୍କର ମାତା ମରିଯିବାରୁ ତାଙ୍କର ପିତା ବାଧ୍ୟ ହୋଇ ଯାଜପୁର ନିବାସୀ ଶମ୍ଭୁ ସିଂହଙ୍କ କନ୍ୟାକୁ ବିବାହ କରିଥିଲେ ଏବଂ ସେ ମଧ୍ୟ ସପତ୍ନୀର ଦୁଇ ଶିଶୁ ପୁତ୍ରଙ୍କୁ ଖୁବ ଯତ୍ନରେ ପାଳନ କରିଥିଲେ ।

ରାଧାନାଥଙ୍କ ପିତା ସୁନ୍ଦର ନାରାୟଣ ଖୁବ ନମ୍ର ଓ ମିଷ୍ଟଭାଷୀ ଥିଲେ ଏବଂ ତାଙ୍କର ମଧ୍ୟ କବିତା ଲେଖିବାର ଶକ୍ତି ଥିଲା । ସେ ପୁତ୍ରର ବିଦ୍ୟା ଶିକ୍ଷା ପ୍ରତି ଖୁବ ତୀକ୍ଷ୍ଣ ଦୃଷ୍ଟି ଦେଇଥିଲେ ଓ ଘରେ ଗୁରୁଶାଳାଟିଏ ବସାଇ ୬ ବର୍ଷର ଶିଶୁ ରାଧାନାଥଙ୍କୁ ସେଇଠାରେ ବିଦ୍ୟା ଆରମ୍ଭ କରାଇଥିଲେ । ଗୁରୁଶାଳୀର ଅଧ୍ୟାପକ ଥିଲେ ନାରାୟଣ ନାଏକ । ଅଧ୍ୟାପକ ବଡ଼ ମାଡ଼ ଦେଉଥିଲେ । ସେଥି ଭୟରେ ଓ ପିତାଙ୍କର ଧମକ ଭୟରେ ରାଧାନାଥ ଖୁବ ମନ ଦେଇ ପାଠ ପଢୁଥିଲେ । ବେଶୀ ଖେଳ ବୁଲ ନ କରିବା ପାଇଁ ତାଙ୍କୁ କଠୋର ଭାବରେ କଟକଣା କରାଯାଇଥିଲା । ଗୁରୁଶାଳୀରେ ୩ ବର୍ଷ ପଢ଼ି ସେ ବର୍ଣ୍ଣ ପରିଚୟଠାରୁ ଛନ୍ଦ ପଢ଼ିବା ଯାଏ ଯାଇଥିଲେ । ବସ୍ତୁତଃ ଏହି ଗୁରୁଶାଳୀରେ ଯେଉଁ ୩ଟି ବର୍ଷ ଥିଲେ ସେହି ସମୟରେ ତାଙ୍କର ଉପେନ୍ଦ୍ରଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁଙ୍କର କାବ୍ୟମାନ ପ୍ରତି ପ୍ରବଳ ଆକର୍ଷଣ ଜନ୍ମିଥିଲା ଯାହାକି ଚିର ଜୀବନ ତାଙ୍କୁ ମୁଗ୍ଧ କରି ରଖିଥିଲା । ଏହା ଛଡ଼ା ଏହି ଗୁରୁଶାଳୀରେ ତାଙ୍କର ଅଙ୍କ ଶିକ୍ଷା ଖୁବ ନିପୁଣ ହୋଇ ପାରିଥିଲା ।

## ବିଦ୍ୟା ଶିକ୍ଷା

ଗୁରୁଶାଳୀ ପାଠ ଶେଷ କରି ରାଧାନାଥ ସୋରଠାରେ ନବ ପ୍ରତିଷ୍ଠିତ ମଧ୍ୟ ଭର୍ଣ୍ଣାକୁଲର ସ୍କୁଲରେ ପ୍ରବେଶ କଲେ । ଏହି ସ୍କୁଲଟି ତାଙ୍କର ପିତାଙ୍କ ଯତ୍ନରେ ସ୍ଥାପିତ ହୋଇଥିଲା ଏବଂ ଜନ୍ମଗ୍ରାମ କେଦାରପୁରଠାରୁ ଏକ ମାଇଲ ଦୂରରେ ଥିଲା । ଏଠାରେ ପଣ୍ଡିତ ଥିଲେ ସଦାଶିବ ନନ୍ଦ । ଏ ମହାଶୟ ସଂସ୍କୃତ ଭାଷାରେ ପ୍ରବୀଣ ଥିଲେ । ରାଧାନାଥ ଏହାଙ୍କଠାରୁ ସଂସ୍କୃତ ସାହିତ୍ୟର ପ୍ରଥମ ପରିଚୟ ପାଇ ସେଥିପ୍ରତି ଆକୃଷ୍ଟ ହୋଇଥିଲେ ।

ରାଧାନାଥ ପରବର୍ତ୍ତୀ ଜୀବନରେ ଓଡ଼ିଶାର ଶିକ୍ଷା ବିଭାଗର ସର୍ବପ୍ରଧାନ କର୍ତ୍ତା ହୋଇ ଶତ ଶତ ଥର ସୋର ବିଦ୍ୟାଳୟ ପରିଦର୍ଶନ କରିବାକୁ ଆସିଥିଲେ; ମାତ୍ର ପିଲାଦିନର ବିଦ୍ୟାଳୟ ବୋଲି ସେ ସେଠାରେ ପୂର୍ବ ପଣ୍ଡିତମାନଙ୍କର ଚୌକିରେ ନ ବସି ସବୁବେଳେ ଖଣ୍ଡିଏ ବେଞ୍ଚରେ ବସି ପରିଦର୍ଶନ କାମ କରୁଥିଲେ ।

ରାଧାନାଥଙ୍କର ଜନ୍ମର ପ୍ରାୟ ୯ ବର୍ଷ ପରେ ତାଙ୍କର ସାନ ଭାଇ ଯଦୁନାଥ ଜନ୍ମ ହୋଇଥିଲେ । ଏହାର ବର୍ଷକ ପରେ ତାଙ୍କର ମା’ ମରିଗଲେ । ତାଙ୍କର ପିତା ଆଉ ବର୍ଷଟିଏ ପରେ ୨ୟ ଥର ବିବାହ କରିଥିଲେ । ଏହି ବିବାହ ଫଳରେ ସୀତାନାଥ ଓ ହରନାଥ ନାମକ ଦୁଇ ପୁଅ ଓ ସ୍ୱର୍ଣ୍ଣମୟୀ ବୋଲି ଗୋଟିଏ ଝିଅ ଜନ୍ମିଥିଲା । ରାଧାନାଥ ପିଲାଦିନୁ ମାତୃଭକ୍ତ, ବିନୟୀ, ନମ୍ର ଓ ସନ୍ତୁଷ୍ଟ ଥିଲେ । ତାଙ୍କ ମନରେ ଛନ୍ଦକପଟ ନ ଥିଲା ଏବଂ ଯେ କେହି ତାଙ୍କୁ ସହଜରେ ଭୁଲାଇ ଦେଇ ପାରୁଥିଲା । କେହି ତାଙ୍କୁ କଟୁକଥା କହିଲେ ସେ ନୀରବରେ ତାହା ସହି ନେଉଥିଲେ । ପିଲାଦିନୁ ସେ ପିତା ଓ ଅନ୍ୟଙ୍କ ପାଖରେ ବସି ରାମାୟଣ, ମହାଭାରତ ଓ ଅନ୍ୟ ପୁରାଣମାନ ଶୁଣିବାକୁ ଖୁବ୍ ଭଲ ପାଉଥିଲେ ।

ସୋର ମଧ୍ୟ ଭର୍ଣ୍ଣାକୁଲର ସ୍କୁଲରେ ପଢ଼ୁଥିଲା ବେଳେ ରାଧାନାଥଙ୍କୁ ବଡ଼ କଠିନ ରୋଗ ହୋଇଥିଲା । ପିତା ସୁନ୍ଦର ନାରାୟଣ ପୁଅର ଚିକିତ୍ସା ନିମିତ୍ତ ବାଲେଶ୍ୱର ନେଇ ଆସିଲେ ଏବଂ ୧୧ ବର୍ଷ ବୟସରେ ତାଙ୍କୁ ବାଲେଶ୍ୱର ଜିଲ୍ଲା ସ୍କୁଲରେ ଭର୍ତ୍ତି କରାଇ ଦେଲେ । ଏଠାରେ ପଢ଼ୁଥିଲା ବେଳେ ରାଧାନାଥ ଜଣେ ମୁସଲମାନ ଶିକ୍ଷକଠାରୁ ପାରସୀ ଓ ଉର୍ଦ୍ଦୁ ଭାଷା ଭଲ କରି ଶିକ୍ଷା କରିଥିଲେ । ପୂର୍ବେ ବାଲେଶ୍ୱରରେ ହାଇ ସ୍କୁଲ ନ ଥିଲା । ଭର୍ଣ୍ଣାକୁଲର ସ୍କୁଲରେ ଅତି ଅଳ୍ପ ମାତ୍ର ଇଂରେଜୀ ଶିକ୍ଷା ଦିଆଯାଉଥିଲା । ୧୮୫୩ ଖ୍ରୀଷ୍ଟାବ୍ଦ

ନଭେମ୍ବର ମାସରେ ଜଜ ମାକ୍‌ଫର୍ସନ ଏବଂ ତାହାଙ୍କ ଭାଟ୍ରେନ ବନ୍ଧୁ ସାହେବଙ୍କ ମିଳିତ ଚେଷ୍ଟାରେ ବାଲେଶ୍ୱରରେ ହାଇସ୍କୁଲ ବସିଥିଲା । ଏହା ପୂର୍ବରୁ କୌଣସି କୌଣସି ଛାତ୍ର ହୁଗ୍ଲିକୁ ଯାଇ ଇଂରେଜୀ ଶିଖି ଆସୁଥିଲେ । ସ୍କୁଲ ଆରମ୍ଭ ଦିନଠାରୁ ଏଠି ସେଠି ଲଢ଼ୁ ୧୮୬୩କୁ ଉପସ୍ଥିତ ଗୃହକୁ ଉଠି ଆସିଲା । ରାଧାନାଥ ୧୮୫୮ ଖ୍ରୀଷ୍ଟାବ୍ଦରେ ଆସି ଏଠାରେ ଭର୍ତ୍ତି ହୋଇଥିଲେ । ଥରେ ହ୍ୟୁଗ୍ରେଞ୍ଜ ନାମକ ଜଣେ ମେଜେଷ୍ଟର ସ୍କୁଲ ପରିଦର୍ଶନ କରିବାକୁ ଆସି ଜ୍ୟାମିତି ସମ୍ବନ୍ଧରେ ଏକ ପ୍ରଶ୍ନ କରିଥିଲେ । ଏକମାତ୍ର ରାଧାନାଥ ତହିଁର ସମାଧାନ କରିବାରୁ ସାହେବ ଟ୨୦ଙ୍କା ପୁରସ୍କାର ଦେଇଥିଲେ । ରାଧାନାଥ ସାହିତ୍ୟ, ଗଣିତ, ସଂସ୍କୃତ ସବୁଥିରେ ପେଶାଦୀ ଥିଲେ ବୋଲି ନିଜର ଉପର ଶ୍ରେଣୀ ଛାତ୍ରଙ୍କୁ ମଧ୍ୟ ଟପି ଯାଉଥିଲେ ।

୧୮୬୩ ସାଲ ଏଣ୍ଟ୍ରାନ୍ସ ପରୀକ୍ଷାରେ ବାଲେଶ୍ୱର ଜିଲ୍ଲା ସ୍କୁଲର ଯେତେ ଛାତ୍ର ପରୀକ୍ଷା ଦେଇଥିଲେ ସେଥିମଧ୍ୟରୁ ପାଶ୍ କରିଥିଲେ ମୋଟେ ୩ ଜଣ । ରାଧାନାଥ ପ୍ରଥମ ଶ୍ରେଣୀରେ ପାଶ୍ କରି ୧୪ ଟଙ୍କା ବୃତ୍ତି ପାଇଥିଲେ । ପ୍ରଥମେ ବାଲେଶ୍ୱର ଜିଲ୍ଲା ସ୍କୁଲର ସବୁଯାକ ଶିକ୍ଷକ ବଙ୍ଗାଳୀ ଥିଲେ । ୧୮୫୮ ସାଲରେ ଦୁଇ ଜଣ ଓଡ଼ିଆ ଶିକ୍ଷକ ଯୋଗ ଦେଇଥିଲେ । ସେଥିରୁ ଜଣେ ଦେବଚନ୍ଦ୍ର ଗୋସ୍ୱାମୀଙ୍କର ବାପ ଏବଂ ଅନ୍ୟ ଜଣକ ପଣ୍ଡିତ ଅଗ୍ନିବାଣ ନନ୍ଦ । ଏହି ପଣ୍ଡିତଙ୍କ ମାଡ଼ ଭୟରେ ରାଧାନାଥ ମୁଗ୍ଧବୋଧ ବ୍ୟାକରଣ ଓ ଅମର କୋଷ ମୁଖସ୍ଥ କରିଥିଲେ ।

ଛାତ୍ର ଜୀବନରେ ରାଧାନାଥ ଏତେଦୂର ଆଡ଼ମ୍ବରଶୂନ୍ୟ ଥିଲେ ଯେ ଖଣ୍ଡିଏ ଗୁଦର ପକାଇ ଖାଲି ଗୋଡ଼ରେ ସେ ସ୍କୁଲକୁ ଯାଉଥିଲେ । ୨ୟ ଶ୍ରେଣୀରେ ପଢ଼ିବା ବେଳେ ସେ ପହିଲି କରି ଜୋତା ପିନ୍ଧିଥିଲେ । ଜିଲ୍ଲା ସ୍କୁଲରେ ପଢ଼ିଲେ ମହାରାଜା ବୈକୁଣ୍ଠ ନାଥ ଦେ ଏବଂ ସୁନହଟର ପ୍ରସିଦ୍ଧ ଜମିଦାର ପୁତ୍ର ରାଜନାରାୟଣ ଦାସ ।

ଆମ ଦେଶରେ ଯେତେବେଳେ ଏଣ୍ଟ୍ରାନ୍ସ ପାଶ୍ କରିବା ଲୋକ ମୁଷ୍ଟିମେୟ ଥିଲେ । ଲୋକେ ଭାବୁଥିଲେ ଏଣ୍ଟ୍ରାନ୍ସ ପାଶ୍ କରିବା ଗୋଟାଏ ଅସାଧ୍ୟ ସାଧନା ଏବଂ ଯେପରି ପାଶ୍ କରିବା ବ୍ୟକ୍ତି ଅସାଧାରଣ ମହାପୁରୁଷ । ରାଧାନାଥ ଯେଉଁ ବର୍ଷ ଏଣ୍ଟ୍ରାନ୍ସ ପାଶ୍ କରନ୍ତି ତହିଁ ପୂର୍ବବର୍ଷ ଜଣେ ବଙ୍ଗାଳୀ ଯୁବକ ଏଣ୍ଟ୍ରାନ୍ସ ପାଶ୍ କରି କଲିକତାରୁ ବାଲେଶ୍ୱରକୁ ଦ୍ୱିତୀୟ ଶିକ୍ଷକ ହୋଇ ଆସିଥିଲେ । ହେଡ୍ ମାଷ୍ଟର ଏବଂ ସେକେଣ୍ଡ ମାଷ୍ଟର ଏଣ୍ଟ୍ରାନ୍ସ ପାଶ୍ କରିନଥିଲେ । ଏ ପ୍ରଥା ନୂଆ ସ୍କୁଲ୍ ହୋଇଥିଲା । କଚେରୀ ଅମଲମାନେ ମନେ କଲେ ଏଣ୍ଟ୍ରାନ୍ସ ପାଶ୍ ନ ଜାଣି କେତେ କଅଣ ହୋଇଥିବ । ଏଣୁ କରି କଚେରୀର ଅମଲ ମୋହରିର ଆଦି ସମସ୍ତେ ଏଣ୍ଟ୍ରାନ୍ସ ପାଶ୍ ବାବୁଙ୍କୁ ଦେଖିବାକୁ ମାଷ୍ଟରଙ୍କ ବସାଘର ସାମନାରେ ଜୁଟି ହୋଇଥିଲେ । ବାବୁଟି ପିଣ୍ଡାକୁ ବାହାରନ୍ତେ ଶତ ଶତ ବ୍ୟକ୍ତି ଏକ ଦୃଷ୍ଟିରେ ଦେବତାଙ୍କ ଦର୍ଶନ କଲାଭଳି ତାଙ୍କୁ ଚାହିଁ ରହୁଥିଲେ । ୪ ଦିନଯାଏ ଏପରି ଭିଡ଼ ଲାଗିଥିଲା । ଏମିତି ଦିନ ମଧ୍ୟ ଏ ଦେଶରେ ଥିଲା । ତହିଁ ପର ବର୍ଷ ଏହି ଏଣ୍ଟ୍ରାନ୍ସ ପରୀକ୍ଷା ଦେବାକୁ ରାଧାନାଥଙ୍କୁ କଲିକତା ପଠାଗଲା । ପରୀକ୍ଷାରେ ସେ ପାଶ୍ କରିଛନ୍ତି ବୋଲି ଖବର ଯେତେବେଳେ ବାଲେଶ୍ୱରରେ ପହଞ୍ଚିଲା ସେତେବେଳେ ସେଠି ଚହଳ ପଡ଼ିଗଲା । କଚେରୀ ଅମଲମାନେ କୁହାକୁହି ହେଲେ ଆମ ସୁନ୍ଦର ବାବୁଙ୍କ ନିର୍ଜିବା ପୁଅଟା ଯେତେବେଳେ ପାଶ୍ କଲା ସେତେବେଳେ ଜଣା ହେଉଛି ଏଣ୍ଟ୍ରାନ୍ସ ପାଶ୍ କରିବା କିଛି ବଡ଼ କଥା ନୁହେଁ ।

ଏହା ପରେ ଏଫ୍. ଏ. ପଢ଼ିବାକୁ ରାଧାନାଥଙ୍କୁ କଲିକତା ପଠାଗଲା । ଯାଙ୍କରେ ମୁରବୀ ହୋଇ ଗଲେ ତାଙ୍କର ସାନ ଭାଇ । ସେତେବେଳେ ବାଲେଶ୍ୱରଠାରୁ କଲିକତାକୁ ବଳଦ ଗାଡ଼ିରେ ଯିବାକୁ ୫।୬ ଦିନ ଲାଗୁଥିଲା । ଅସଂଖ୍ୟ ନଦୀ ନାଳ, କାଦୁଆ ବାଟ,

ଚୋରର ଉତ୍ପାତରେ, ବାଘ ଭାଲୁରେ ସମସ୍ତ ବିପଦସଙ୍କୁଳ ଥିଲା । ୧୫।୧୬ ବର୍ଷର ପିଲା ରାଧାନାଥଙ୍କୁ ନେଇ କଟକରୁ ରମାନାଥ ବାବୁ ୬ଷ୍ଠ ଦିନ ସନ୍ଧ୍ୟାକୁ କଲିକତାରେ ପହଞ୍ଚି ପୁରୁଣା ଗୋଟାଏ ବସାଘରେ ରହିଲେ । ତହିଁ ଆରଦିନ ସକାଳୁ ଦୁହେଁ ଉଠି ଦୁଇଟା ଲୋଟା ଧରି ପୋଖରୀପାଣି ଯିବାକୁ ପଡ଼ିଆ ଖୋଜି ଖୋଜି ହଇରାଣ ହୋଇଗଲେ । ପଡ଼ିଆକୁ ଝାଡ଼ା ଫେରି ଯିବା ଯାହାର ଅଭ୍ୟାସ ତା ପକ୍ଷରେ ପାଇଖାନା ଘରେ ଝାଡ଼ା ଫେରିବା ଭାରି ଅଡୁଆ କଥା । କଲିକତା ସେତେବେଳେ ଘନବସତିପୂର୍ଣ୍ଣ ନ ଥିଲେ ମଧ୍ୟ ବଡ଼ ବଡ଼ ବଜାର ମାନ କୋଠାଘରପୂର୍ଣ୍ଣ ରହିଥିଲା । ବଜାର ନିକଟରେ ପୋଖରୀପାଣି ଯିବାପାଇଁ ନିରୋଳା ଖୋଲା ଜାଗା ନ ଥିଲା । ରାଧାନାଥ ପ୍ରତିଦିନ ସକାଳୁ ମଳତ୍ୟାଗ କରିବା ପାଇଁ ବହୁତ ଦୂରକୁ ଯିବାକୁ ବାଧ୍ୟ ହେଉଥିଲେ । ଏଣୁକରି ଏତେ ବାଟ ବୁଲି ବୁଲି ବସାକୁ ଫେରି ସମୟ ସୁବିଧା ହୋଇ ଖିଆ ପିଆ ଶେଷ କରିବାକୁ ପ୍ରାୟ ଅଧବେଳା ଏକୋଟି କଟି ଯାଉଥିଲା । ଫଳରେ ସେ କ୍ଲାସକୁ ନିୟମିତ ସମୟରେ ଯାଇ ପାରୁ ନ ଥିଲେ । ଏହି ପାଇଖାନା କଷ୍ଟରୁ ରକ୍ଷା ପାଇବାକୁ ହେଲେ ସ୍ୱତନ୍ତ୍ର ବସାଘର ଦରକାର । ଏଥିପାଇଁ ବେଶୀ ଭଡ଼ା ଦେବା କଥା । ରାଧାନାଥଙ୍କ ବେଶୀ ପଇସା ଖର୍ଚ୍ଚ କରିବା ସଙ୍ଗତି ନ ଥିଲା । ଅତଏବ ସେ ବାଧ୍ୟ ହୋଇ କଷ୍ଟ କରୁଥିଲେ । ମଳମୂତ୍ର ବେଗ ରୁନ୍ଧ କରିବାରୁ ତାଙ୍କର ସ୍ୱାସ୍ଥ୍ୟ ଖରାପ ହୋଇଗଲା, ସେ ନାଲିରକ୍ତ ଝାଡ଼ାରେ ବଡ଼ କଷ୍ଟ ପାଇଥିଲେ । ଏପରି ରୋଗରେ ତାଙ୍କ ପକ୍ଷରେ କଲିକତାରେ ରହିବା ସମ୍ଭବ ହେଲା ନାହିଁ । ସେ ଉକ୍ତ କ୍ଲାସର ସବୁ ପଢ଼ା ପରିତ୍ୟାଗ କରି ବାଲେଶ୍ୱର ଫେରି ଆସିଲେ ।

ରାଧାନାଥ ଏଫ୍. ଏ. ପଢ଼ିବା ପାଇଁ କଲିକତା ପ୍ରେସିଡେନ୍ସି କଲେଜରେ ନାମ ଲେଖାଇଥିଲେ । ସେତେବେଳେ ପ୍ରେସିଡେନ୍ସି

କଲେଜରେ ନବୀନଚନ୍ଦ୍ର ସେନ୍, ରମେଶଚନ୍ଦ୍ର ଦତ୍ତ, ସୁରେନ୍ଦ୍ରନାଥ ବାନାର୍ଜି, ଆନନ୍ଦମୋହନ ବାସୁ, ସାରଦା ଚରଣ ମିତ୍ର, ଗୁରୁଦାସ ବ୍ୟାନର୍ଜି ପ୍ରଭୃତି ଯୁବକମାନେ ଉକ୍ତ କଲେଜର ଛାତ୍ର ଥିଲେ । ଏମାନେ ସମସ୍ତେ ପରେ ଭାରତର ରାଜନୀତି, ସାହିତ୍ୟ ଏବଂ ସରକାରୀ କର୍ମରେ ଖୁବ ବଡ଼ ବଡ଼ ସ୍ଥାନ ପାଇଥିଲେ । ଏମାନଙ୍କ ଭିତରୁ ଅନେକଙ୍କ ସହିତ ରାଧାନାଥଙ୍କ ଘନିଷ୍ଠ ପରିଚୟ ଓ ବନ୍ଧୁତା ଜନ୍ମିଥିଲା । ସେ ଅତି ଅଳ୍ପକାଳ କଲିକତାରେ ଛାତ୍ର ଜୀବନ କଟାଇଥିଲେ ମଧ୍ୟ ସେଠାକାର ସଂସ୍କୃତି ଏବଂ ଗଣ ଆନ୍ଦୋଳନ ତାଙ୍କର ତରୁଣ ପ୍ରାଣରେ ଭଲ ଭାବରେ ଛାୟାପାତ କରିଥିଲା । ପରବର୍ତ୍ତୀ ଜୀବନରେ ସେମାନଙ୍କ ଭିତରୁ କେତେକଙ୍କ ସହିତ ରାଧାନାଥ ପୁଣି ସଂସ୍ପର୍ଶରେ ଆସିଥିଲେ । କେବଳ ନବୀନଚନ୍ଦ୍ର ସେନ ତାଙ୍କର ସହପାଠୀ ଥିଲେ ଏବଂ ପରେ ଦୁହେଁଯାକ ଦେଶପ୍ରସିଦ୍ଧ କବି ହୋଇ ପାରିଥିଲେ । ନବୀନଚନ୍ଦ୍ର ସେନ ରାଧାନାଥଙ୍କ କବିତ୍ୱରେ ମୁଗ୍ଧ ହୋଇ ତାଙ୍କୁ ଗୋଟିଏ ସୁନ୍ଦର କବିତା ଦ୍ୱାରା ସମ୍ବର୍ଦ୍ଧନା ଜଣାଇଥିଲେ ।

ବେମାର ଅବସ୍ଥାରେ କଲିକତାରୁ ଫେରିଆସି ରାଧାନାଥ ଅନେକ ଦିନଯାଏ ଶଯ୍ୟାଶାୟୀ ରହିଲେ । ସେ ଅତ୍ୟଧିକ ଦୁର୍ବଳ ହୋଇ ପଡ଼ି ଥିଲେ ବୋଲି ପଢ଼ାପଢ଼ି ଏକାବେଳକେ ଛାଡ଼ି ଦେବାକୁ ବାଧ୍ୟ ହୋଇଥିଲେ ।

ତାଙ୍କର ପିତା ବଡ଼ ଆଶା କରିଥିଲେ ଯେ ପୁଅ ଉଚ୍ଚଶିକ୍ଷା ପାଇ ଘରକୁ ଫେରିବ । ବଡ଼ ସରକାରୀ ହାକିମ ହୋଇ ବଂଶ ଉଜ୍ଜ୍ୱଳ କରିବ । ପିତାଙ୍କ ଏହି ବାସନା ମନରେ ମରିଗଲା ଏବଂ ପ୍ରଧାନ ଚିନ୍ତା ହେଲା ପୁଅକୁ କିପରି ରୋଗମୁକ୍ତ କରିବେ ।

ଏହିପରି ଅନେକ ଦିନ ରୋଗ ଭୋଗି ଭୋଗି ରାଧାନାଥ ଶେଷକୁ ଆରୋଗ୍ୟ ହେଲେ । ସେତେବେଳକୁ କଟକଠାରେ

ଏଫ୍. ଏ. କ୍ଲାସ ପିଛିଆଏ କନ୍ଯା ପୁଅଙ୍କୁ କଟକରେ ରଖାଇ ପାଠ ପଢ଼ାଇବା ଖର୍ଚ୍ଚ ଯୋଗାଇବା ପିତାଙ୍କ ପକ୍ଷରେ ଅସମ୍ଭବ ଥିଲା । ପାଠ ପଢ଼ା ଛାଡ଼ ହେଲାରୁ ସରକାରୀ ବୃତ୍ତି ଟଙ୍କା ବନ୍ଦ ହୋଇ ଯାଇଥିଲା ।

ଏହି ସମୟରୁ କଟକ ଜିଲା ଗୁମ୍ଫାପାଲ ଗ୍ରାମବାସୀ ଜଗମୋହନ ସିଂ ପ୍ରେସିଡ଼େନ୍ସି କଲେଜରୁ ଡିଗ୍ରୀପରୀକ୍ଷା ପାଶ କରି କଟକକୁ ଡେପୁଟି ମାଜିଷ୍ଟ୍ରେଟ ହୋଇ ଆସିଥିଲେ । ସେ ଆଗରୁ ରାଧାନାଥଙ୍କୁ ବୁଦ୍ଧିମାନ ଛାତ୍ର ବୋଲି ଜାଣିଥିଲେ । ପଇସା ଅଭାବରୁ ତାଙ୍କପରି ପିଲା ପଢ଼ିପାରୁ ନାହିଁ ଦେଖି ଜଗମୋହନ ବାବୁ ତାଙ୍କ ନିଜ ଘରେ ରଖି ସମସ୍ତ ଖର୍ଚ୍ଚ ଯୋଗାଇ ପଢ଼ାଇବା ପାଇଁ ପ୍ରସ୍ତାବ କରିଥିଲେ । ସମ୍ପର୍କରେ ସେ ଥିଲେ ରାଧାନାଥଙ୍କର ପିଉସୀ ପୁଅ ଭାଇ । ରାଧାନାଥଙ୍କର ମଧ୍ୟ ପଢ଼ିବାର ଏକାନ୍ତ ଆଗ୍ରହ ଥିଲା ମାତ୍ର ନିଜ ପରିବାରର ଅର୍ଥକଷ୍ଟ ଦେଖି ସେ ପଢ଼ିବା ଆଶା ଏକାବେଳକେ ଛାଡ଼ ଚାକିରି କରିବାକୁ ମନ ବଳାଇଲେ । କିନ୍ତୁ ହେଲେ ରୋଜଗାର କରି ବୁଢ଼ା ବାପଙ୍କୁ ସାହାଯ୍ୟ କରି ପାରିବେ ଏହାହିଁ ତାଙ୍କର ଲକ୍ଷ୍ୟ ଥିଲା ।

ଅଳ୍ପ କେତେଦିନ ପରେ ବାଲେଶ୍ୱର ସ୍କୁଲରେ ତୃତୀୟ ଶିକ୍ଷକ କାମ ଖାଲି ହେଲା । ରାଧାନାଥ ସେହି କାମଟି ଯୋଗାଡ଼ କରି ନେଇ-ଥିଲେ । ଉପରେ ଯେଉଁ ଜଗମୋହନ ବାବୁଙ୍କ କଥା କୁହାଗଲା, ସେ ଅତ୍ୟନ୍ତ ପର ଉପକାରୀ ଓ ଦେଶପ୍ରେମିକ ବ୍ୟକ୍ତି ଥିଲେ । ସେ ଓଡ଼ିଶାର ବହୁବିଧ ଉନ୍ନତିକର କାମରେ ସାହାଯ୍ୟ ଦେଇଥିଲେ । କଟକର ବ୍ରାହ୍ମ ମନ୍ଦିରଟି ତାଙ୍କର କୀର୍ତ୍ତି ଅଟେ ।

## ଶିକ୍ଷକତା

୧୮୬୪ ଖ୍ରୀଷ୍ଟାବ୍ଦ ମଇ ମାସ ପହିଲାରୁ ରାଧାନାଥ ମାତ୍ର ୧୬।୧୭ ବର୍ଷ ବୟସରେ ବାଲେଶ୍ୱର ସ୍କୁଲରେ ମାସିକ ଟ୩୦ଙ୍କା ବେତନରେ

ଦ୍ବିତୀୟ ଶିକ୍ଷକ ହୋଇଥିଲେ ଏବଂ ସେହି ବର୍ଷ ଜୁନ ମାସ ଶେଷକୁ ଉକ୍ତ ପଦରେ ସ୍ଥାୟୀ ହୋଇଥିଲେ । ସେତେବେଳକୁ ସ୍କୁଲରେ ୬ ଜଣ ଶିକ୍ଷକ ଥିଲେ । ହେଡ୍‌ମାଷ୍ଟର ଗଙ୍ଗାଧର ଆଚାର୍ଯ୍ୟ ପାଉଥିଲେ ୫୧୦୦ଙ୍କା ଏବଂ ସର୍ବ ନିମ୍ନ ବେତନ ପାଉଥିଲେ ପଣ୍ଡିତ ଅବିନାଶ ଚନ୍ଦ୍ର ମାସିକ ୫୨୦ଙ୍କା ମାତ୍ର । ରାଧାନାଥଙ୍କୁ ଜଣେ ସହକାରୀ ଶିକ୍ଷକରୂପେ ପାଇ ହେଡ୍‌ମାଷ୍ଟର ଖୁବ ସନ୍ତୁଷ୍ଟ ହେଲେ ଏବଂ ତାଙ୍କର ଜ୍ଞାନବୃଦ୍ଧି ନିମିତ୍ତ ତାଙ୍କୁ ନାନାଦି ଭଲ ଭଲ ବହି ପଢାଉଥିଲେ । ତାଙ୍କର ଚେଷ୍ଟାରେ ରାଧାନାଥ ପ୍ରଥମେ ପ୍ରବନ୍ଧ ଲେଖିବାକୁ ଆରମ୍ଭ କରିଥିଲେ । ଏହିପରି ଦୁହେଁ ଦୁହିଁଙ୍କର ଖୁବ ଅନୁରକ୍ତ ହୋଇ ପଡ଼ିଥିଲେ । ରାଧାନାଥ ଶିକ୍ଷକତା କରିବାର ଦୁଇ ବର୍ଷ ପରେ ଓଡ଼ିଶାରେ କରାଳ ଦୁର୍ଭିକ୍ଷ ନଅଙ୍କ ଘଟିଥିଲା । ଏହି ଦୁର୍ଭିକ୍ଷରେ ଦେଶର ଏକଚତୁର୍ଥାଂଶ ଲୋକ ଖାଇବାକୁ ନ ପାଇ ମରିଯାଇଥିଲେ । ଏହି ଦୁର୍ଭିକ୍ଷ ପ୍ରସଙ୍ଗରେ ଅନେକଗୁଡ଼ିଏ ପ୍ରବନ୍ଧ ଗଙ୍ଗାଧର ବାବୁ କଲିକତାର ବିଖ୍ୟାତ ଇଂରେଜୀ ସମ୍ବାଦପତ୍ର ହିନ୍ଦୁ ପେଟ୍ରିୟଟରେ ଛପାଇଥିଲେ । ଉକ୍ତ ଲେଖା ଯୋଗୁ ସରକାରୀ ମହଲରେ ଚହଳ ପଡ଼ି ଯାଇଥିଲା । ବାଲେଶ୍ବରର ତତ୍‌କାଳୀନ ମେଜେଷ୍ଟ୍ରେଟ ବହୁ ଅନୁସନ୍ଧାନ ପରେ ପତ୍ର ଲେଖକ ଗଙ୍ଗାଧର ବାବୁ ବୋଲି ଜାଣିପାରି ତାଙ୍କ ଉପରେ ରାଗିଗଲେ ଏବଂ ତାଙ୍କୁ ମେଦନୀ-ପୁରକୁ ବଦଳିକରାଇ ଦେଇଥିଲେ । ମେଦନୀପୁରଠାରୁ ମଧ୍ଯ ଗଙ୍ଗାଧର ବାବୁ ରାଧାନାଥ ବାବୁଙ୍କୁ ବିଦ୍ୟାନୁଶୀଳନରେ ଉତ୍ସାହ ଦେଉଥିଲେ ।

## ନଅଙ୍କ

ପୁରୀର ଠାକୁର ରାଜା ଦ୍ବିତୀୟ ଦିବ୍ୟସିଂହ ଦେବଙ୍କ ରାଜତ୍ବର ୯ ଅଙ୍କରେ ଅର୍ଥାତ୍ ୧୮୬୬ ଖ୍ରୀଷ୍ଟାବ୍ଦରେ ଏହି ଦୁର୍ଭିକ୍ଷ ଘଟିଥିଲା ବୋଲି ଓଡ଼ିଶାରେ ଏହାକୁ ନଅଙ୍କ କହନ୍ତି । ଦୁର୍ଭିକ୍ଷର କରାଳତାରେ

ପ୍ରଥମେ ସରକାରୀ ଡାକମାନେ ସମୂହ ହୋଇ ଯାଉଥିଲେ ବୋଲି ପ୍ରତିକାର କରିବାରେ ବିଳମ୍ବ ଘଟିଥିଲା । ଦୁର୍ଭିକ୍ଷର ଭୟାବହତା କଥାରେ କହି ହେବ ନାହିଁ । ରାଧାନାଥ କହୁଥିଲେ ଯେ ସେ ନିଜେ ଦେଖିଥିଲେ ଜଣେ ୧୫।୧୬ ବର୍ଷର ବାଳକ ଅନ୍ୟ କୌଣସି ମୂର୍ଦ୍ଦାରର ହାଡଟିଏ ଧରି କଞ୍ଚା ଚୋବାଉଥିଲା । ଏହି ଦୁର୍ଭିକ୍ଷରେ ବହୁ ନରନାରୀ ଅନାହାରରେ ମରିଯାଇଥିଲେ ଅବା ପେଟ ବିକଳରେ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ । ମାଆ ପୁଅର ମାଂସ ଖାଇବା ଘଟଣା ଏହି ନଅଙ୍କରେ ଦେଖାଯାଇଥିଲା ।

## ବିଦ୍ୟାନୁରାଗ

ଦୁର୍ଭିକ୍ଷ ବନ୍ଦ ହେଲା ପରେ ରାଧାନାଥ ଦୁଇ ଗୁଣ ଉତ୍ସାହରେ ବିବିଧ ପୁସ୍ତକ ପାଠରେ ମନ ପ୍ରାଣ ଢାଳି ଦେଇଥିଲେ । ସେ ଏଫ୍. ଏ. ପରୀକ୍ଷା ଘରେ ବସି ଛାତ୍ର ସ୍ୱତନ୍ତ୍ରଭାବେ ଦେବାକୁ ପ୍ରସ୍ତୁତ ହେଲାବେଳେ ପ୍ରସିଦ୍ଧ ବଙ୍ଗଳା କାବ୍ୟ କବିତାମାନ ଏବଂ ଇଂରେଜୀ କବି ଚସର, ସେକ୍ସପିୟର, କାଉପର୍, ମିଲଟନ୍, ବାଇରନ୍, ଶେଲି, ଟେନିସନଙ୍କ କାବ୍ୟ ନାଟକ ପ୍ରଭୃତି ଭଲ ଭାବରେ ଅଧ୍ୟୟନ କରିଥିଲେ । ସେ ନିଜେ ବଙ୍ଗଳାରେ ସାନ ସାନ ପଦ୍ୟମାନ ମଧ୍ୟ ରଚନା କରୁଥିଲେ । ଏହି ସମୟରେ ବାଲେଶ୍ୱର ସ୍କୁଲକୁ ପଣ୍ଡିତ କାମ ପାଇ ଶ୍ରୀ ସଦାଶିବ ନନ୍ଦ ଆସିଥିଲେ । ରାଧାନାଥ ତାଙ୍କ ପାଖରୁ ନିୟମତେ ସଂସ୍କୃତ ଶିକ୍ଷା କରି ଶକୁନ୍ତଳା, ମେଘଦୂତ ପ୍ରଭୃତି ବହି ପଢିଥିଲେ । ରାଧାନାଥଙ୍କର ଅସାଧାରଣ ସ୍ମରଣଶକ୍ତି ଏବଂ ପ୍ରଗାଢ ବିଦ୍ୟାନୁରାଗ ଯୋଗୁଁ ସେ ଅତି ଶୀଘ୍ର ବଡ଼ ବଡ଼ ବହି ପଢି ଆୟତ୍ତ କରି ନେଇଥିଲେ ।

ରାଧାନାଥ ବାଲେଶ୍ୱର ସ୍କୁଲରେ ଶିକ୍ଷକତା କାମ ଆରମ୍ଭ କଲାବେଳେ ଦାମୋଦର ପ୍ରସାଦ ଦାସ ନାମକ ଜଣେ ଉତ୍ସାହୀ

ଯୁବକ ନିଜ ଘରେ ଗୋଟିଏ ଛୋଟ ଛାପାଖାନା ସ୍ଥାପନ କରିଥାନ୍ତି । ତାଙ୍କର ଗୋଟିଏ ଖାନ ଲାଇବ୍ରେରୀ ମଧ୍ୟ ଥାଏ । ସେଥିରେ ପ୍ରାୟ ଦେଢ଼ ହଜାର ଭଲ ବହି ସଂଗ୍ରହ ହୋଇଥାଏ । ଛାପାଖାନାରୁ ଗୋଟିଏ କ୍ଷୁଦ୍ର ମାସିକ ପତ୍ରିକା ମଧ୍ୟ ପ୍ରକାଶ କରୁଥାନ୍ତି । ପତ୍ରିକାର ନାମ ଥିଲା ସମ୍ବାଦବାହିକା ଏବଂ ପ୍ରେସଟିର ନାମ ଥିଲା ଉତ୍କଳ ପ୍ରେସ । ଦାମୋଦର ବାବୁଙ୍କ ମୃତ୍ୟୁ ପରେ ତାଙ୍କ ସ୍ତ୍ରୀଙ୍କଠାରୁ ବୈକୁଣ୍ଠନାଥ ଦେ ଉକ୍ତ ଲାଇବ୍ରେରୀ ଓ ପ୍ରେସଟି କିଣି ନେଇଥିଲେ ।

ବାଲେଶ୍ୱରଠାରେ ଶିକ୍ଷକତା କରୁଥିଲା ବେଳେ ଦାମୋଦର ଦାସ, ଫକୀର ମୋହନ ସେନାପତି, ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ, କୁମାର ବୈକୁଣ୍ଠନାଥ ଦେ ପ୍ରଭୃତିଙ୍କ ଘନିଷ୍ଠ ବନ୍ଧୁତ୍ୱ ଯୋଗୁ ରାଧାନାଥଙ୍କର ପ୍ରାଚୀନ ଓଡ଼ିଆ ସାହିତ୍ୟ ପ୍ରତି ପ୍ରବଳ ଆକର୍ଷଣ ଜନ୍ମିଥିଲା ଏବଂ ସେ ଔତ୍ସୁକ୍ୟ ଜନ୍ୟ ସହିତ ଏହିସବୁ ପ୍ରାଚୀନ କାବ୍ୟମାନ ପାଠକରି ତାହାର ସରସତାରେ ମୁଗ୍ଧ ହୋଇ ଯାଇଥିଲେ । ରାଧାନାଥ ପ୍ରଥମେ ପ୍ରଥମେ ବଙ୍ଗଳାରେ କବିତା ଲେଖୁଥିଲେ । ବାଲେଶ୍ୱରରେ ସେତେବେଳେ ଜନ୍ ବିମସ୍ ସାହେବ ମେଜେଷ୍ଟର ଥାଆନ୍ତି । ସେ ଓଡ଼ିଆ ଭାଷା ଓ ସାହିତ୍ୟକୁ ଖୁବ୍ ଭଲ ପାଉଥିଲେ । ସେ ଥରେ ରାଧାନାଥଙ୍କୁ ଦୁଃଖ କରି କହୁଥିଲେ ଯେ ଫକୀର ମୋହନ ଛଡ଼ା ଅନ୍ୟ କେହି ଓଡ଼ିଆ ଲେଖକ ବାଲେଶ୍ୱରରୁ ବାହାରିଲେ ନାହିଁ । ତାଙ୍କର ଏହି ଉକ୍ତି ଶୁଣି ରାଧାନାଥଙ୍କର ଓଡ଼ିଆରେ ଲେଖା ଲେଖି କରିବା ପାଇଁ ଆଗ୍ରହ ଜନ୍ମିଥିଲା । ରାଧାନାଥଙ୍କର ତତ୍କାଳୀନ ଲେଖାମାନ ଉତ୍କଳ ଦର୍ପଣରେ ପ୍ରକାଶିତ ହୋଇଥିଲା; ମାତ୍ର ସରକାରଙ୍କ ବିରୁଦ୍ଧରେ କଡ଼ା ଲେଖା ବାହାରିବାରୁ ଉକ୍ତ ପତ୍ରିକା ୧୮୮୪ ଖ୍ରୀଷ୍ଟାବ୍ଦରେ ବନ୍ଦକରି ଦିଆଯାଇଥିଲା ।

# ପୁରୀ ବଦଳି

ପାଞ୍ଚ ବର୍ଷ କାଳ ବାଲେଶ୍ୱର ଜିଲା ସ୍କୁଲରେ ତୃତୀୟ ଶିକ୍ଷକ କାମ କରି ରାଧାନାଥ ପୁରୀ ଜିଲା ସ୍କୁଲର ଦ୍ୱିତୀୟ ଶିକ୍ଷକ ପଦକୁ ଉନ୍ନୀତ ହୋଇଥିଲେ । ଏହା ୧୮୬୯ ଖ୍ରୀଷ୍ଟାବ୍ଦର ଜାନୁଆରୀ ମାସରେ ଘଟିଥିଲା । ସେହି ବର୍ଷ ଘରୋଇ ଛାତ୍ର ଭାବରେ ସେ ଏଫ୍. ଏ. ପରୀକ୍ଷା ଦେଇ ପାସ୍ କରିଥିଲେ । ନିଜର କାମ ଛଡ଼ା ଏହି ପରୀକ୍ଷା ପାଠ ପାଇଁ ତାଙ୍କୁ ଅତିରିକ୍ତ ପରିଶ୍ରମ କରିବାକୁ ପଡ଼ିବାରୁ ସେ କଠିନ ରୋଗରେ ପଡ଼ିଗଲେ । ସେତେବେଳେ ପୁରୀର ସିଭିଲ ସର୍ଜନ ଥିଲେ ହ୍ୟୁଆର୍ଟ ସାହେବ । ଏହି ସାହେବ ପରେ କଟକକୁ ଆସି ହ୍ୟୁଆର୍ଟ ସ୍କୁଲ ନିଜ ଖର୍ଚ୍ଚରେ ନିର୍ମାଣ କରି ଦେଇଥିଲେ । ହ୍ୟୁଆର୍ଟ ସାହେବଙ୍କ ସାର୍ଟିଫିକେଟ ବଳରେ ରାଧାନାଥଙ୍କୁ ୧୮୭୧ ଖ୍ରୀଷ୍ଟାବ୍ଦରେ ୪ ମାସର ଛୁଟି ମିଳିଥିଲା । ପୁରୀଜିଲା ସ୍କୁଲରେ ତାଙ୍କର ପ୍ରିୟତମ ଛାତ୍ର ଥିଲେ ମଧୁସୂଦନ ରାଓ । ସେତେବେଳେ ଦୁହେଁ ମିଳି ସାହିତ୍ୟ ଚର୍ଚ୍ଚା କରିବାର ସୁଯୋଗ ପାଇଥିଲେ । ଥରେ ହେଡ଼ ମାଷ୍ଟରଙ୍କଠାରୁ ବହୁତ ମାଡ଼ ଖାଇଥିବାରୁ ମଧୁସୂଦନ ପ୍ରମୁଖ କେତେ ଜଣ ଛାତ୍ର କୁଣ୍ଡେଇବେଣ୍ଟ ସାହିର ଏକ ନିର୍ଜ୍ଜନ ସ୍ଥାନରେ ଢେଲା ସଂଗ୍ରହ କରିଥିଲେ । ଉଦ୍ଦେଶ୍ୟ ଥିଲା ହେଡ଼ ମାଷ୍ଟର ସନ୍ଧ୍ୟାକୁ ବୁଲିଗଲେ ତାଙ୍କୁ ଢେଲା ଫିଙ୍ଗିବେ । ଦୈବ ଯୋଗକୁ ସେଦିନ ହେଡ଼ ମାଷ୍ଟର ସେବାଟେ ଗଲେ ନାହିଁ, ଗଲେ ରାଧାନାଥ । ସେ ପିଲାମାନଙ୍କୁ ଦେଖି ତାଙ୍କ କଥା ଶୁଣି ବୁଝାଇ ଶାନ୍ତ କରିଥିଲେ । ଏହି ମଧୁସୂଦନ ପରେ ରାଧାନାଥଙ୍କ ଅଧୀନରେ ଶିକ୍ଷକ ଏବଂ ଶେଷକୁ ଓଡ଼ିଶାର ସ୍କୁଲ ଇନ୍ସପେକ୍ଟର ହୋଇଥିଲେ । ତାଙ୍କର ଭଗବତ୍ ଭକ୍ତି ଦେଖି ଏବଂ ଧର୍ମମୂଳକ ଲେଖାମାନ ପଢ଼ି ଲୋକେ ତାଙ୍କୁ ଭକ୍ତକବି ବୋଲି ପଦ ଦେଇଥିଲେ । ମଧୁସୂଦନ ଓ ରାଧାନାଥ କଟକ ଢାଲୀଗଳିରେ ପାଖାପାଖି ଘର କରି ରହିଥିଲେ

ଏବ ଦୁହିଁଙ୍କ ସମାଧି ପାଖାପାଖି କଟକ ସେଣ୍ଟଜୋସେଫ୍ ଶ୍ମଶାନରେ ରହିଅଛି ।

ପୁରୀରେ ଗୋଟିଏ ନୂଆ ଭଡ଼ାଘରେ ରାଧାନାଥ ରହିବାକୁ ଯାଇ ମହା ବିପଦରେ ପଡ଼ିଥିଲେ । ପ୍ରତିଦିନ ତାଙ୍କ ଭାତ ଜଳଖିଆରୁ ହାଡ଼ ବାହାରିଲା । ଏହା ଏକ ଭୌତିକ କାଣ୍ଡ ଥିଲା । କେବଳ ମହାପ୍ରସାଦ ଆଣି ଖାଇଲେ ସେଥିରୁ ହାଡ଼ ବାହାରୁ ନ ଥିଲା । କେତେକ ଲୋକ ଓ ଯତ୍ନ କରି ଦେଖାଇ ଦେଲେ ମଧ୍ୟ ଭାତରୁ ହାଡ଼ ବାହାରୁଥିଲା ବୋଲି ରାଧାନାଥ ଅନେକ ସମୟରେ ଖାଇବାକୁ ପାଉନଥିଲେ । ଏହି ଭୌତିକ ଘଟଣାରେ ପୁରୀ ସହରରେ ବଡ଼ ଚହଳ ପଡ଼ିଯାଇଥିଲା । ଏହି କାଣ୍ଡ ଦୁଇ ମାସ ଯାଏ ଚାଲିଥିଲା ।

ପୁରୀ ସ୍କୁଲର ଲାଇବ୍ରେରୀ ସେତେବେଳେ ଓଡ଼ିଶାରେ ସବୁଠାରୁ ବଡ଼ ଥିଲା । ସେଥିରେ ଥିବା ସମସ୍ତ ଭଲ ଭଲ ବଙ୍ଗଳା ଓ ଇଂରାଜୀ ବହି ରାଧାନାଥ ପାଠ କରିଥିଲେ; ମାତ୍ର ଉକ୍ତ ଲାଇବ୍ରେରୀ ରୁଳ ଘରେ ଥିବାରୁ ଜଣେ କଣ୍ଟ୍ରାକ୍ଟର ତାହା ବଦମାସି କରି ପୋଡ଼ି ଦେଇଥିଲା ।

ପୁରୀରେ ଥିଲାବେଳେ ରାଧାନାଥ ହୋପଠି କଲେଜର ପଦ ନିମିତ୍ତ ଆଇନ ପରୀକ୍ଷା ଦେବାକୁ ସ୍ଥିର କରି ଆଇନ ବହିମାନ ପଢ଼ିଥିଲେ । ଏହି ଅତ୍ୟଧିକ ପରିଶ୍ରମ ଫଳରୁ ତାଙ୍କୁ ଶ୍ୱାସରୋଗ ହୋଇଥିଲା । ଏଥିନିମିତ୍ତ ଛୁଟିନେଇ ବାଲେଶ୍ୱରରେ ରହି ଚିକିତ୍ସିତ ହୋଇ ସେ ରୋଗମୁକ୍ତ ହୋଇଥିଲେ । ଏହି ରୋଗ ନିମିତ୍ତ ସେ ନାସ ଗ୍ରହଣ ଓ ଅଫିମ ଖାଇବାକୁ ବାଧ୍ୟ ହୋଇଥିଲେ ।

ରାଧାନାଥ ଏହି ଲାଇବ୍ରେରୀ ବହି ନେଇ ପଢ଼ି ନିଜର ଜ୍ଞାନର ପରିସର ବହୁତ ବଢ଼ାଇ ଥିଲେ । ଏହି ଲାଇବ୍ରେରୀରେ ରାଧାନାଥଙ୍କ ସହିତ ପ୍ରଥମେ ଫକୀର ମୋହନଙ୍କର ପ୍ରଗାଢ଼ ବନ୍ଧୁତା ଜନ୍ମିଥିଲା ।

ବିଦ୍ୟାଳୟର କାମ ଶେଷ ପରେ ରାଧାନାଥ ପ୍ରତ୍ୟହ ମହାତ୍ମା ବୈକୁଣ୍ଠନାଥଙ୍କ ବଇଠକୋହିକୁ ଯାଇ ରାତି ୯।୧୦ଟା ଯାଏ ନାନାଦି ବିଷୟରେ ଚର୍ଚ୍ଚା କରୁଥିଲେ । ପୂର୍ବେ କୁହାଯାଇ ଅଛି ଏହି ବୈକୁଣ୍ଠନାଥ ରାଧାନାଥଙ୍କର ସହପାଠୀ ଥିଲେ ମାତ୍ର ରାଧାନାଥ ଉଚ୍ଚ ପ୍ରଥମାଶନ ପାଇ ଏଣ୍ଟ୍ରାନ୍ସ ପାସ୍ କରିବାରୁ ତାଙ୍କୁ ଅନେକେ ଯାଉଥିଲେ । ଶିକ୍ଷକତା କରୁଥିଲାବେଳେ ରାଧାନାଥ ସଂସ୍କୃତ କାବ୍ୟ ଏବଂ ଓଡ଼ିଆ ଛାନ୍ଦ ବନ୍ଧମାନ ଖୁବ୍ ଭଲ ଭାବରେ ପଢ଼ି ଅବୃତ୍ତି କରି ପାରୁଥିଲେ । ୧୮ବର୍ଷ ବୟସରେ ରାଧାନାଥ ପ୍ରଥମେ ବଙ୍ଗଳାରେ ସାନ ସାନ କବିତାମାନ ଲେଖି କବିତାବଳୀ ନାମ ଦେଇ ଛପାଇ ଥିଲେ । ଏହା ସେତେବେଳେ ଖୁବ୍ ପ୍ରଶଂସା ଅର୍ଜନ କରିଥିଲା । ଏହା ପରେ ସେ ଇଟାଲୀୟ ଯୁବା ଏବଂ ବଟକୋ ପ୍ରବନ୍ଧ ଓଡ଼ିଆରେ ଲେଖି ଉତ୍କଳ ଦର୍ପଣ ନାମକ ପତ୍ରିକାରେ ପ୍ରକାଶ କରିଥିଲେ ।

## ପଦୋନ୍ନତି

ପୁରୀରେ ୩ବର୍ଷ ରହିଲା ପରେ ସେ ବାଙ୍କୁଡ଼ା ଜିଲା ସ୍କୁଲର ୨ୟ ଶିକ୍ଷକ ଭାବରେ ୧୮୭୨ ସାଲରେ ବଦଳି ହୋଇଗଲେ । ବାଙ୍କୁଡ଼ା ସ୍କୁଲର ବଙ୍ଗାଳୀ ଛାତ୍ରମାନେ ଓଡ଼ିଆ ମାଷ୍ଟରଙ୍କୁ ପ୍ରଥମେ ପ୍ରଥମେ ତାଚ୍ଛଲ୍ୟ କରିଥିଲେ ମାତ୍ର ପରେ ତାଙ୍କର ବିନୟ ସ୍ୱଭାବ, ପଢ଼ାଇବାର ଧରଣ ଏବଂ ସାହିତ୍ୟ ଓ ଗଣିତରେ ଅପୂର୍ବ ପାଣ୍ଡିତ୍ୟ ଦେଖି ତାଙ୍କୁ ଦେବତା ପରି ଭକ୍ତି କରିବାକୁ ଲାଗିଲେ । ବାଙ୍କୁଡ଼ାରେ ୬ମାସ ରହିଲା ପରେ ସେ ବାଲେଶ୍ୱର ଜିଲାର ସ୍କୁଲ ଡେପୁଟି ଇନ୍‌ସପେକ୍ଟର ହୋଇ ଆସିଲେ । ମହା ସମାରୋହରେ ବାଙ୍କୁଡ଼ାର ଛାତ୍ରମାନେ ତାଙ୍କୁ ବିଦାୟ ସମ୍ଭାଷଣ ଦେଇଥିଲେ । ଜୁଲାଇ ୨୬ ତାରିଖ ୧୮୭୨ ଖ୍ରୀଷ୍ଟାବ୍ଦରେ ରାଧାନାଥ ଡେପୁଟି ଇନ୍‌ସପେକ୍ଟର

ହୋଇ ଆସିଥିଲେ । ସେତେବେଳେ କୁମାର ବୈକୁଣ୍ଠନାଥ ଦେ ଗୋଟିଏ ବାଳିକା ବିଦ୍ୟାଳୟ ସ୍ଥାପନ କରିଥାନ୍ତି । ତହିଁରେ ଉପଯୁକ୍ତ ଓଡ଼ିଆ ପାଠ୍ୟ ପୁସ୍ତକ ନ ଥିବାରୁ ସେ ରାଧାନାଥଙ୍କ ଦ୍ୱାରା ସାବିତ୍ରୀ ନାଟକ ଖଣ୍ଡିଏ ବହି ଲେଖାଇ ନିଜେ ଛପାଇ ଥିଲେ । ଇତି ମଧ୍ୟରେ ପୂର୍ବର ଛାତ୍ର ମଧୁସୂଦନ ବାଲେଶ୍ୱରକୁ ୨ୟ ଶିକ୍ଷକ ହୋଇ ଆସିବାରୁ ଗୁରୁ ଶିଷ୍ୟଙ୍କର ପୁଣି ପ୍ରଗାଢ଼ ମିଳନ ଘଟିଲା । ଏହିଠାରେ ଦୁହେଁ ମିଳି ପ୍ରଥମ ପାଠ ନାମକ ପାଠ୍ୟ ବହି ପ୍ରକାଶ କରିଥିଲେ । ଏହା ପରେ ଅଭିଧାନ ଦୀପିକା, ଉତ୍କଳ ରଚନା ଏବଂ ଅଙ୍କର ଆଦର୍ଶ ପ୍ରଶ୍ନାବଳୀ ପ୍ରକାଶ କରିଥିଲେ ।

ସେତେବେଳେ ରାସ୍ତାଘାଟର ସୁବିଧା ନ ଥିଲା କିମ୍ବା ରେଳଗାଡ଼ି ନ ଥିଲା । ଚାଲି ଚାଲି କିମ୍ବା ଗୋରୁ ଗାଡ଼ିରେ ରାଧାନାଥ ବିଭିନ୍ନ ସ୍କୁଲ ପରିଦର୍ଶନ କରିବାକୁ ଯାଉଥିଲେ । ଏହି ସମୟରେ ସେ ତାଙ୍କର ବଙ୍ଗଳା କବିତାବଳୀର ୨ୟ ଭାଗ ଛପାଇ ଥିଲେ ।

## ବିବାହ

୧୮୭୦ ଖ୍ରୀଷ୍ଟାବ୍ଦରେ ବେମୁଣ୍ଡା ଗ୍ରାମର ଚନ୍ଦ୍ରମୋହନ ଆଦିତ୍ୟଙ୍କ କନ୍ୟା ପରଶମଣିଙ୍କ ସହିତ ରାଧାନାଥଙ୍କର ବିବାହ ହୋଇଥିଲା । ଏହି ବିବାହର ୩ ବର୍ଷ ପରେ ତାଙ୍କର ପିତାଙ୍କର ମୃତ୍ୟୁ ଘଟିଲା । ପିତାଙ୍କ ମୃତ୍ୟୁ ପରେ ବିରାଟ ପରିବାରର ସମସ୍ତ ଭାର ରାଧାନାଥଙ୍କ ଉପରେ ପଡ଼ିଲା । ସେତେବେଳେ ଜନ ବିମ୍ସ୍ ନାମକ ଏକ ଉଦାର ବ୍ୟକ୍ତି ବାଲେଶ୍ୱର ଜିଲ୍ଲାର କଲେକ୍ଟର ଥିଲେ ଏବଂ ରାଧାନାଥଙ୍କୁ ବହୁ ବିଷୟରେ ଉତ୍ସାହ ଓ ସାହାଯ୍ୟ କରିଥିଲେ । ଶିକ୍ଷକ ଏବଂ ଡେପୁଟି ଇନ୍ସପେକ୍ଟର ଭାବରେ ସେ ଖୁବ୍ ଭଲ କାମ କରି ବଡ଼ ବଡ଼ ହାକିମମାନଙ୍କଠାରୁ ଉଚ୍ଚ ପ୍ରଶଂସା ଅର୍ଜନ କରିଥିଲେ ।

୫ ବର୍ଷ କାଳ ଡେପୁଟି ଇନ୍‌ସପେକ୍ଟର କାମ କଲା ପରେ ୨୬।୧୧।୧୮୭୭ରେ ରାଧାନାଥ ଓଡ଼ିଶା ଶିକ୍ଷା ବିଭାଗର ଜଏଣ୍ଟ ଇନ୍‌ସ୍‌ପେକ୍ଟର ପଦକୁ ଉନ୍ନୀତ ହେଲେ ଏବଂ ସମଗ୍ର ଓଡ଼ିଶା ପରିଭ୍ରମଣ କରିବା ପାଇଁ ତାଙ୍କୁ ସୁବିଧା ସୁଯୋଗ ମିଳିଲା । ସେତେବେଳେ ଓଡ଼ିଶାର ଗଡ଼ଜାତ ସମୂହ ଦୁର୍ଗମ ଥିଲେ ମଧ୍ୟ ରାଧାନାଥ ସବୁ ରାଜ୍ୟ ଭଲ ଭାବରେ ବୁଲିଥିଲେ ।

୧୮୮୦ ଖ୍ରୀଷ୍ଟାବ୍ଦରେ ତାଙ୍କର ସାନ ଭଉଣୀ ସ୍ୱର୍ଣ୍ଣମୟୀଙ୍କର ବିବାହ କାଳପୁର ଜମିଦାର ଗୋବିନ୍ଦବଲ୍ଲଭ ରାୟଙ୍କ ସହିତ ହୋଇଥିଲା । ଏହି ଗୋବିନ୍ଦ ବାବୁ ୧୮୯୬ ମସିହାରେ ପଟାଣି ସାମନ୍ତଙ୍କ ସହିତ ରାୟ ବାହାଦୁର ଉପାଧି ପାଇଥିଲେ । ଉପାଧିର ସନନ୍ଦ ଦେବାପାଇଁ କଟକ ବାରବାଟୀ ଦୁର୍ଗ ମଧ୍ୟରେ ଏକ ଦରବାର ହୋଇଥିଲା ଏବଂ ଏହି ଦରବାରକୁ ଲକ୍ଷ୍ୟ କରି ରାଧାନାଥ ତାଙ୍କର ଦରବାର କବିତା ଲେଖିଥିଲେ । ଓଡ଼ିଶାରେ ଶିକ୍ଷାର ଉନ୍ନତି ରାଧାନାଥଙ୍କ ଆମଳରେ ବହୁତ ବେଶୀ ହୋଇଥିବା କଥା ବଙ୍ଗଳା ଗଭର୍ଣ୍ଣମେଣ୍ଟ ବାରମ୍ବାର ସ୍ୱୀକାର କରିଥିଲେ ।

ରାଧାନାଥ ଜଏଣ୍ଟ ଇନ୍‌ସପେକ୍ଟର ଥିଲାବେଳେ ସେ ବିଭାଗର ଶିକ୍ଷା ଡିରେକ୍ଟର ଥିଲେ ଭୂଦେବ ବାବୁ । ରାଧାନାଥଙ୍କ ଯୋଗ୍ୟତା ଓ ଦକ୍ଷତାରେ ସେ ଖୁବ ସନ୍ତୁଷ୍ଟ ହୋଇ ଗଭର୍ଣ୍ଣମେଣ୍ଟକୁ ଲେଖି ତାଙ୍କୁ ପୁରା ଇନ୍‌ସପେକ୍ଟର କରାଇଥିଲେ । ଭୂଦେବ ବାବୁ ସେ ଯୁଗର ଅସାମାନ୍ୟ ଲେଖକ ଓ ପଣ୍ଡିତ । ତାଙ୍କର ପ୍ରରୋଚନାରେ ରାଧାନାଥ ବଡ଼ ବଡ଼ ଓଡ଼ିଆ କାବ୍ୟ ଲେଖିବାକୁ ପ୍ରବୃତ୍ତ ହୋଇଥିଲେ । ଭୂଦେବ ବାବୁଙ୍କ ଗହଣରେ ରାଧାନାଥ ଓଡ଼ିଶାର ବଡ଼ ବଡ଼ ସ୍କୁଲ ପରିଦର୍ଶନ କରିଥିଲେ ଏବଂ ତାଙ୍କଠାରୁ ବହୁତ ଶିକ୍ଷା ପାଇଥିଲେ ।

ହୋଇ ଆସିଥିଲେ । ସେତେବେଳେ ଶ୍ରୀମାନ ବୈକୁଣ୍ଠନାଥ ଦେ ଗୋଟିଏ ବାଳିକା ବିଦ୍ୟାଳୟ ସ୍ଥାପନ କରିଥାନ୍ତି । ତହିଁରେ ଉପଯୁକ୍ତ ଓଡ଼ିଆ ପାଠ୍ୟ ପୁସ୍ତକ ନ ଥିବାରୁ କବି ରାଧାନାଥଙ୍କ ଦ୍ୱାରା ସାବିତ୍ରୀ ନାଟକ ଖଣ୍ଡିଏ ବହି ଲେଖାଇ ନିଜେ ଛପାଇ ଥିଲେ । ଇତି ମଧ୍ୟରେ ପୂର୍ବର ଛାତ୍ର ମଧୁସୂଦନ ବାଲେଶ୍ୱରକୁ ୨ୟ ଶିକ୍ଷକ ହୋଇ ଆସିବାରୁ ଗୁରୁ ଶିଷ୍ୟଙ୍କର ପୁଣି ପ୍ରଗାଢ଼ ମିଳନ ଘଟିଲା । ଏହିଠାରେ ଦୁହେଁ ମିଳି ପ୍ରଥମ ପାଠ ନାମକ ପାଠ୍ୟ ବହି ପ୍ରକାଶ କରିଥିଲେ । ଏହା ପରେ ଅଭିଧାନ ଦୀପିକା, ଉତ୍କଳ ରଚନା ଏବଂ ଅଙ୍କର ଆଦର୍ଶ ପ୍ରଶ୍ନାବଳୀ ପ୍ରକାଶ କରିଥିଲେ ।

ସେତେବେଳେ ରାସ୍ତାଘାଟର ସୁବିଧା ନଥିଲା କିମ୍ବା ରେଲଗାଡ଼ି ନଥିଲା । ଚାଲି ଚାଲି କିମ୍ବା ଗୋରୁ ଗାଡ଼ିରେ ରାଧାନାଥ ବିଭିନ୍ନ ସ୍କୁଲ ପରିଦର୍ଶନ କରିବାକୁ ଯାଉଥିଲେ । ଏହି ସମୟରେ ସେ ତାଙ୍କର ବଙ୍ଗଳା କବିତାବଳୀର ୨ୟ ଭାଗ ଛପାଇ ଥିଲେ ।

## ବିବାହ

୧୮୭୦ ଖ୍ରୀଷ୍ଟାବ୍ଦରେ ରେମୁଣା ଗ୍ରାମର ଚନ୍ଦ୍ରମୋହନ ଆଦିତ୍ୟଙ୍କ କନ୍ୟା ପରଶମଣିଙ୍କ ସହିତ ରାଧାନାଥଙ୍କର ବିବାହ ହୋଇଥିଲା । ଏହି ବିବାହର ୩ ବର୍ଷ ପରେ ତାଙ୍କର ପିତାଙ୍କର ମୃତ୍ୟୁ ଘଟିଲା । ପିତାଙ୍କ ମୃତ୍ୟୁ ପରେ ବିରାଟ ପରିବାରର ସମସ୍ତ ଭାର ରାଧାନାଥଙ୍କ ଉପରେ ପଡ଼ିଲା । ଏତେବେଳେ ଜନ ବିମ୍ସ୍ ନାମକ ଏକ ଉଦାର ବ୍ୟକ୍ତି ବାଲେଶ୍ୱର ଜିଲାର କଲେକ୍ଟର ଥିଲେ ଏବଂ ରାଧାନାଥଙ୍କୁ ବହୁ ବିଷୟରେ ଉତ୍ସାହ ଓ ସାହାଯ୍ୟ କରିଥିଲେ । ଶିକ୍ଷକ ଏବଂ ଡେପୁଟି ଇନ୍‌ସପେକ୍ଟର ଭାବରେ ସେ ଖୁବ୍ ଭଲ କାମ କରି ବଡ଼ ବଡ଼ ହାକିମମାନଙ୍କଠାରୁ ଉଚ୍ଚ ପ୍ରଶଂସା ଅର୍ଜନ କରିଥିଲେ ।

୫ ବର୍ଷ କାଳ ଡ଼େପୁଟି ଇନ୍ସପେକ୍ଟର କାମ କଲା ପରେ ୨୭।୧୧।୧୮୭୭ରେ ରାଧାନାଥ ଓଡ଼ିଶା ଶିକ୍ଷା ବିଭାଗର ଜଏଣ୍ଟ ଇନ୍ସପେକ୍ଟର ପଦକୁ ଉନ୍ନୀତ ହେଲେ ଏବଂ ସମଗ୍ର ଓଡ଼ିଶା ପରିଭ୍ରମଣ କରିବା ପାଇଁ ତାଙ୍କୁ ସୁବିଧା ସୁଯୋଗ ମିଳିଲା । ସେତେବେଳେ ଓଡ଼ିଶାର ଗଡ଼ଜାତ ସମୂହ ଦୁର୍ଗମ ଥିଲେ ମଧ୍ୟ ରାଧାନାଥ ସବୁ ରାଜ୍ୟ ଭଲ ଭାବରେ ବୁଲିଥିଲେ ।

୧୮୮୦ ଖ୍ରୀଷ୍ଟାବ୍ଦରେ ତାଙ୍କର ସାନ ଭଉଣୀ ସ୍ବର୍ଣ୍ଣମୟୀଙ୍କର ବିବାହ କାଉପୁର ଜମିଦାର ଗୋବିନ୍ଦବଲ୍ଲଭ ବସୁଙ୍କ ସହିତ ହୋଇଥିଲା । ଏହି ଗୋବିନ୍ଦ ବାବୁ ୧୮୯୬ ମସିହାରେ ପଠାଣି ସାମନ୍ତଙ୍କ ସହିତ ରାୟ ବାହାଦୁର ଉପାଧି ପାଇଥିଲେ । ଉପାଧିର ସନନ୍ଦ ଦେବାପାଇଁ କଟକ ବାରବାଟୀ ଦୁର୍ଗ ମଧ୍ୟରେ ଏକ ଦରବାର ହୋଇଥିଲା ଏବଂ ଏହି ଦରବାରକୁ ଲକ୍ଷ୍ୟ କରି ରାଧାନାଥ ତାଙ୍କର ଦରବାର କବିତା ଲେଖିଥିଲେ । ଓଡ଼ିଶାରେ ଶିକ୍ଷାର ଉନ୍ନତି ରାଧାନାଥଙ୍କ ଅମଳରେ ବହୁତ ବେଶୀ ହୋଇଥିବା କଥା ବଙ୍ଗଳା ଗଭର୍ଣ୍ଣମେଣ୍ଟ ବାରମ୍ବାର ସ୍ବୀକାର କରିଥିଲେ ।

ରାଧାନାଥ ଜଏଣ୍ଟ ଇନ୍ସପେକ୍ଟର ଥିଲାବେଳେ ସେହି ବିଭାଗର ଶିକ୍ଷା ଡିରେକ୍ଟର ଥିଲେ ଭୂଦେବ ବାବୁ । ରାଧାନାଥଙ୍କ ଯୋଗ୍ୟତା ଓ ଦକ୍ଷତାରେ ସେ ଖୁବ ସନ୍ତୁଷ୍ଟ ହୋଇ ଗଭର୍ଣ୍ଣମେଣ୍ଟକୁ, ଲେଖି ତାଙ୍କୁ ପୁରା ଇନ୍ସପେକ୍ଟର କରାଇଥିଲେ । ଭୂଦେବ ବାବୁ ସେ ଯୁଗର ଅସାମାନ୍ୟ ଲେଖକ ଓ ପଣ୍ଡିତ । ତାଙ୍କର ପ୍ରରୋଚନାରେ ରାଧାନାଥ ବଡ଼ ବଡ଼ ଓଡ଼ିଆ କାବ୍ୟ ଲେଖିବାକୁ ପ୍ରବୃତ୍ତ ହୋଇଥିଲେ । ଭୂଦେବ ବାବୁଙ୍କ ଗହଣରେ ରାଧାନାଥ ଓଡ଼ିଶାର ଛୋଟ ବଡ଼ ସ୍କୁଲ ପରିଦର୍ଶନ କରିଥିଲେ ଏବଂ ତାଙ୍କଠାରୁ ବହୁତ ଶିକ୍ଷା ପାଇଥିଲେ ।

ଜନ୍ ବମ୍‌ସ୍ ସାହେବ ଓଡ଼ଶାର ଅସ୍ଥାୟୀ କମିଶନର ଥିଲବେଳେ ଓଡ଼ିଆ ପାଇଁ ଶିକ୍ଷା ଇନ୍‌ସ୍‌ପେକ୍ଟର ପଦ ଫିଟିଥିଲା ଏବଂ ପେସ୍ ନାମକ ସାହେବ ସେହି କାମରେ ଥଥିଲେ । କମିଶନରଙ୍କ ଅଫିସ ସହିତ ଏହି ଅଫିସ ସଂଯୁକ୍ତ ଥିଲା । ମାତ୍ର ପେସ୍ ସାହେବ ନିଜ ବସାରେ ଅଫିସ କଲେ । ଏଥିରେ କମିଶନର ରେଭେନ୍‌ସା ସାହେବ ବିରକ୍ତ ହୋଇ ସରକାରଙ୍କୁ ଲେଖି ଇନ୍‌ସପେକ୍ଟର ପଦ ଓଡ଼ଶାରୁ ଉଠାଇ ଦେଇଥିଲେ । ଓଡ଼ଶାରେ ପ୍ରଥମ ଡେପ୍ୟୁଟି ଇନ୍‌ସପେକ୍ଟର ହୋଇ ଆସିଥିଲେ ଏଜର୍ ସାହେବ । ଏତେବେଳକୁ ମୟୂରଭଞ୍ଜ ମହାରାଜାଙ୍କ ସାହାଯ୍ୟରେ ଗ୍ଗୁଡା ଦ୍ୱାରା କଟକରେ ବି.ଏ. ପର୍ଯ୍ୟନ୍ତ କଲେଜ କ୍ଲାସ ଫିଟିଥିଲା । ଏଜର ସାହେବ ଏମାନଙ୍କୁ ପଢ଼ାଉଥିଲେ । ଦୁଇବର୍ଷ କାଳ କଲେଜରୁ କେହି ବି. ଏ. ପାଶ ନ କରିବାରୁ କଲେଜ ଉଠି ଯାଉଥିଲା, ମାତ୍ର ଏହି ବର୍ଷ ବାଲେଶ୍ୱରର ଦୁର୍ଗାଚରଣ ସାହୁ ନାମକ ଛାତ୍ର ବି. ଏ. ପାଶ୍ କରିବାରୁ କଲେଜ ରହିଗଲା । ଏହି ବର୍ଷ ଅର୍ଥାତ୍ ୧୮୭୯ ମସିହାରେ କଲେଜର ସମସ୍ତ ଭାର ସରକାର ଗ୍ରହଣ କଲେ । ଏଜର ସାହେବଙ୍କ ପରେ ନନ୍ଦକିଶୋର ଦାସ ଡେପ୍ୟୁଟି ଇନସପେକ୍ଟର ହୋଇଥିଲେ । ନନ୍ଦ କିଶୋରଙ୍କର ଅନୁଗୋଳ ପ୍ରହୁଣା ଗଡ଼ରେ ମୃତ୍ୟୁ ହେବାରୁ ବାମସ୍ ସାହେବଙ୍କ ସୁପାରିଶ ବଳରେ ରାଧାନାଥ ସେ କାମ ପାଇଥିଲେ । ବାମସ୍ ସାହେବ ୧୪ଟି ଭାଷାରେ ସୁପଣ୍ଡିତ ଥିଲେ । ୧୮୬୫ ଖ୍ରୀଷ୍ଟାବ୍ଦରେ ରେଭେନ୍‌ସା ସାହେବ କମିଶନର ହୋଇ କୋର୍ଟ କଚେରୀ ଓ ବିଦ୍ୟାଳୟ ମାନଙ୍କରେ ଓଡ଼ିଆ ଭାଷା ଚଳାଇ ଥିଲେ ।

## ଇନ୍‌ସପେକ୍‌ଟର ପଦ

୧୮୯୨ ସାଲରେ ଓଡ଼ଶାରେ ପୁଣି ସ୍କୁଲ ଇନ୍‌ସପେକ୍ଟର କାମ ସୃଷ୍ଟି ହେବାରୁ ରାଧାନାଥ ସେହି କାମରେ ନିଯୁକ୍ତ ହୋଇଥିଲେ ।

ବର୍ଷକ ପୂର୍ବରୁ ଶ୍ରୀ ରାମଚନ୍ଦ୍ର ଭଞ୍ଜ ମୟୂରଭଞ୍ଜରେ ଗାଦି ପାଇ ଉତ୍କଳ ପ୍ରଭା ନାମକ ମାସିକ ପତ୍ରିକା ପ୍ରକାଶ କରୁଥିଲେ । ଚିଲିକା ଓ ମହାଯାତ୍ରା ରଚନା କରି ରାଧାନାଥ ଏହି ପତ୍ରିକାରେ ପ୍ରଥମେ ପ୍ରକାଶ କରିଥିଲେ ଏବଂ ୨୦୦ ଟଙ୍କା ପୁରସ୍କାର ପାଇଥିଲେ । ୧୮୮୨ ଖ୍ରୀଷ୍ଟାବ୍ଦରେ ଭୂଦେବ ବାବୁ ସରକାରଙ୍କ ଅନୁମତିକ୍ରମେ ରାଧାନାଥଙ୍କୁ ସଙ୍ଗରେ ନେଇ ପାଟଣା, ଗୟା, ବୀରଭୂମ, ହୁଗୁଳି ପ୍ରଭୃତି ସ୍ଥାନ ବୁଲାଇ ଆଣିଥିଲେ । ହୁଗୁଳିର ଧର୍ମଶାଳାରେ ନୟାଗଡ଼ର ରାଜା ରାଣୀ ସେତେବେଳେ ରହୁଥିଲେ ଏବଂ ସେଠାରେ ଭୂଦେବ ବାବୁଙ୍କ ସହିତ ପରିଚୟ ହୋଇଥିଲେ । ସରକାରୀ ଉଚ୍ଚ ପାହ୍ୟାରେ ଥିଲେ ମଧ୍ୟ ରାଧାନାଥ ନିରହଙ୍କାରୀ ବ୍ୟକ୍ତି ଥିଲେ । ମୟୂରଭଞ୍ଜର ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଭଞ୍ଜଙ୍କ ସଙ୍ଗରେ ରାଧାନାଥଙ୍କର ପ୍ରଗାଢ଼ ବନ୍ଧୁତା ଆଗରୁ ଜନ୍ମିଥିଲା । ରାଧାନାଥ ଯେତେବେଳେ ମାସିକ ୪୮୦ ଟଙ୍କା ଦରମା ପାଉଥିଲେ ସେତେବେଳେ ମହାରାଜା ତାଙ୍କୁ ନିଜ ରାଜ୍ୟର ଦେବାନ ପଦ ଦେବାକୁ ଆଗ୍ରହ ପ୍ରକାଶ କରି ଚିଠି ଲେଖିଥିଲେ । ସେଥିପାଇଁ ତାଙ୍କୁ ମାସିକ ୬୦୦ ଟଙ୍କା ଦରମା ମଧ୍ୟ ଯାଚିଥିଲେ । ମହାରାଜାଙ୍କର ଏକାନ୍ତ ଇଚ୍ଛା ଥିଲା ଯେ ରାଧାନାଥ ତାଙ୍କର ପୁଅଙ୍କୁ ଉଚିତ ଶିକ୍ଷା ମଧ୍ୟ ଦେଇ ପାରିବେ । ଏଥି ନିମିତ୍ତ ସେ ଖଣ୍ଡିଏ ଚିଠିରେ ଯୁବରାଜ ରାମଚନ୍ଦ୍ରଙ୍କର ଦାୟିତ୍ୱ ରାଧାନାଥଙ୍କୁ ଅର୍ପଣ କରି କହିଥିଲେ "ସେ ଆପଣଙ୍କର ସାନ ଭାଇ । ଆମ୍ଭର ସମସ୍ତ କ୍ଷମତା ଆପଣଙ୍କୁ ଅର୍ପଣ କଲୁ ।" ଏହି ଚିଠି ସେ ୧୮୮୨ ଖ୍ରୀଷ୍ଟାବ୍ଦରେ ଲେଖିଥିଲେ । ବହୁ ଚିନ୍ତା ଓ ବନ୍ଧୁମାନଙ୍କ ସହିତ ପରାମର୍ଶ ପରେ ରାଧାନାଥ ଏହି ପ୍ରସ୍ତାବ ଅତି ବିନୀତ ଭାବରେ ପ୍ରତ୍ୟାଖ୍ୟାନ କରିଥିଲେ ।

## ଭାରତ ଭ୍ରମଣ

ଭୂଦେବ ବାବୁଙ୍କ ସହିତ ରାଧାନାଥ କେତେ ଗୋଟି ପ୍ରସିଦ୍ଧ ସ୍ଥାନ ଦେଖି ଆସିଥିଲେ । ୧୮୮୩ ଖ୍ରୀଷ୍ଟାବ୍ଦରେ କଲିକତାରେ ଏକ ବିରାଟ ପ୍ରଦର୍ଶନୀ ବସିଥିଲା । ରାଧାନାଥ ଛୁଟି ନେଇ ସେହି ପ୍ରଦର୍ଶନୀ ଦେଖିବାକୁ ଯାଇଥିଲେ ଏବଂ ସେଠାରୁ ଗୟା, କାଶୀ, ଅଯୋଧ୍ୟା, ପ୍ରୟାଗ, ଦିଲ୍ଲୀ, ଆଗ୍ରା, ମଥୁରା, ବୃନ୍ଦାବନ, ହରିଦ୍ୱାର, ଜୟପୁର ଜବଲପୁର, ଆଜମୀର, ଉଜ୍ଜୟିନୀ, ବୋମ୍ବାଇ ପ୍ରଭୃତି ଭ୍ରମଣ କରି ଶେଷକୁ ଫେରିଲାବେଳକୁ ଦାର୍ଜିଲିଂ ଯାଇଥିଲେ । ଏଥିପାଇଁ ସେ ତିନି ମାସର ଛୁଟି ନେଇଥିଲେ । କାଶୀରେ ସେ ଯାଇ ସୁପ୍ରସିଦ୍ଧ ତ୍ରୈଲଙ୍ଗ ସ୍ୱାମୀଙ୍କର ଦର୍ଶନ କରି କୃତାର୍ଥ ହୋଇଥିଲେ । ତାଙ୍କର ଏହି ଭାରତ ଭ୍ରମଣରେ ଜୀବନ୍ତ ଆଭାସ ତାଙ୍କ ପ୍ରଣୀତ ଚିଲିକାରେ ସେ ବର୍ଣ୍ଣନା କରିଅଛନ୍ତି ।

୧୮୮୫ ଖ୍ରୀଷ୍ଟାବ୍ଦରେ ରାଧାନାଥ କେଦାରଗୌରୀ କ୍ଷୁଦ୍ର କାବ୍ୟ ରଚନା କରି ପ୍ରକାଶ କରିଥିଲେ । ଗୋଟିଏ ଗ୍ରୀସ ଦେଶୀୟ ପ୍ରାଚୀନ ପ୍ରଣୟ କାହାଣୀର ଛାୟା ଅବଲମ୍ବନରେ ସେ ଏହି କାବ୍ୟଟି ଲେଖିଥିଲେ ଏବଂ ବିଷୟବସ୍ତୁକୁ ଏପରି ନିଜସ୍ୱ କରିଥିଲେ ଯେ ପରବର୍ତ୍ତୀ ଯୁଗରେ ଲୋକେ ତାହାକୁ ଓଡ଼ିଶା ଇତିହାସର ଅଂଶ ବୋଲି ଭ୍ରମ କ୍ରମେ ଗ୍ରହଣ କରୁଅଛନ୍ତି । କେଦାରଗୌରୀ ଛପାଇବାର ବର୍ଷକ ପରେ ସେ ଚନ୍ଦ୍ରଭାଗା କାବ୍ୟ ରଚନା କରିଥିଲେ । ଏହା ଏକ କିମ୍ବଦନ୍ତୀ ଉପରେ ପ୍ରତିଷ୍ଠିତ ।

ଇତିପୂର୍ବରୁ ସେ ଓଡ଼ିଆ କବିତାବଳୀ ଦୁଇ ଭାଗ, ବେଣୀ ସଂହାର, ଶିବାଜୀଙ୍କ ଉଦ୍ଧାର କାବ୍ୟ, ଭାରତଭୂମି ଇତ୍ୟାଦି ରଚନା କରିଥିଲେ । ଏହି ଦୁଇ ଖଣ୍ଡି ୧୮୮୦ ଖ୍ରୀଷ୍ଟାବ୍ଦରେ ମୁଦ୍ରିତ ହୋଇ ବହୁକାଳ ଓଡ଼ିଶାରେ ପାଠ୍ୟପୁସ୍ତକ ରୂପେ ଚଳିଥିଲା ।

କେଦାରଗୌରୀ ଓ ଚନ୍ଦ୍ରଭାଗାକୁ କୁମାର ବୈକୁଣ୍ଠନାଥ ଦେ ପ୍ରକାଶ କରିଥିଲେ ।

୧୮୮୬ ସାଲରେ ରେଭରେଣ୍ଡ ବକଲୀଙ୍କ ସମ୍ପାଦନାରେ ଏବଂ ୧୮୯୦ ରେ ଷ୍ଟୁଅର୍ଟ ସାହେବଙ୍କ ସମ୍ପାଦନାରେ ରାଧାନାଥ ଯୋଗ ଦେଇଥିଲେ । ଏପରି ବିରାଟ ସମ୍ପାଦନା କାର୍ଯ୍ୟରେ ଅଦ୍ୟାଏ ଘଟି ନାହିଁ । ଏହି ଦୁଇ ଜଣ ସାହେବ ଏଠା ଲୋକଙ୍କର ବିବିଧ ଉପକାର କରି ଚିରସ୍ମରଣୀୟ ହୋଇ ଅଛନ୍ତି ।

ରାଧାନାଥ ନିଜ କର୍ମ ଜୀବନରେ ଘୃଣ୍ୟ ବ୍ୟବହାର କରି ନ ଥିଲେ । ସେ ସୂର୍ଯ୍ୟ ଓ ନକ୍ଷତ୍ରମାନଙ୍କ ଯୋଗେ ସୁନ୍ଦର ଭାବେ ସମୟ ଜାଣି ପାରୁଥିଲେ । ସେ ସବୁବେଳେ ବାହାର ଗୋଟିଏ ଘରରେ ଖାଉଥିଲେ, ଯେପରି କି ତାଙ୍କ ପାଇଁ ଅନ୍ୟ କେହି ବାଟୋଇ ଅସୁବିଧାରେ ନ ପଡ଼ନ୍ତି । ରାଧାନାଥ ଶିକ୍ଷା ବିଭାଗର ଇନ୍‌ସପେକ୍ଟର ଏବଂ ପ୍ରସିଦ୍ଧ ଲେଖକ ହିସାବରେ ଓଡ଼ିଶା ଗଡ଼ଜାତର ସବୁ ରାଜାମାନଙ୍କର ଅନ୍ତରଙ୍ଗ ବନ୍ଧୁ ହୋଇ ପାରିଥିଲେ । ଏମାନଙ୍କ ମଧ୍ୟରୁ ବାମଣ୍ଡା ମହାରାଜା ସାର୍ ସୁଢ଼ଳଦେବ ଖୁବ ଘନିଷ୍ଠ ବନ୍ଧୁ ଥିଲେ ।

୧୮୮୭ ରେ ନନ୍ଦିକେଶ୍ୱରୀ ଓ ୧୮୮୮ ରେ ଉଷା ରଚନା କରି ଭଟକ୍ଲୋବଅ ପ୍ରେସରୁ ପ୍ରକାଶ କରିଥିଲେ । ପଠାଣି ସାମନ୍ତଙ୍କୁ ଦେଖିଲା ମାତ୍ରେ ସେ ରତ୍ନନିଧି ପାଇଲା ପରି ହେଉଥିଲେ ଏବଂ ତାଙ୍କ ମହିମା ପ୍ରଚାର ନିମିତ୍ତ ସବୁପ୍ରକାର ଚେଷ୍ଟା କରିଥିଲେ ।

୧୮୯୧ ସାଲରେ ତାଙ୍କର ପାର୍ବତୀ କାବ୍ୟ ବାମଣ୍ଡା ଜଗନ୍ନାଥ ବଲ୍ଲଭ ପ୍ରେସରୁ ପ୍ରକାଶିତ ହୋଇଥିଲା । ୧୮୭୭ ଖ୍ରୀଷ୍ଟାବ୍ଦରୁ ୧୮୯୨ ଖ୍ରୀଷ୍ଟାବ୍ଦ ଯାଏ ଜଏଣ୍ଟ ସ୍କୁଲ ଇନ୍‌ସପେକ୍ଟର କାମ କରୁଥିଲା ବେଳେ ଓଡ଼ିଶାର ଶିକ୍ଷା ଓ ସାହିତ୍ୟର ଅଶେଷ ଶ୍ରୀବୃଦ୍ଧି କରି ରାଧାନାଥ ଦେଶ

ସ୍ୱଦେଶରେ ଗରିବ, ଦୁଃଖୀ ଏବଂ ଦୀନ ମହାତ୍ମାଙ୍କଠାରେ ସମାନ ଆଦର ଓ ପ୍ରତିଷ୍ଠା ପାଇଥିଲେ । ୧୮୯୪ ମର ସେ ଯଯାତି କେଶରୀ କାବ୍ୟକୁ ପ୍ରଥମେ ସମ୍ବଲପୁର ହିତୈଷିଣୀରେ ଛପାଇଥିଲେ ।

ରାଧାନାଥଙ୍କର ଅସଂଖ୍ୟ କାବ୍ୟ କବିତା ରହିଅଛି । ସେ ସବୁ ନବ୍ୟ ଓଡ଼ିଆ ସାହିତ୍ୟ ଭଣ୍ଡାରର ଅମୂଲ୍ୟ ଧନ । ବିଶେଷ କରି ତାଙ୍କର ଅସମ୍ପୂର୍ଣ୍ଣ ମହାଯାତ୍ରା କାବ୍ୟ ଭାରତୀୟ ସାହିତ୍ୟ ଜଗତରେ ସମୁଜ୍ଜ୍ୱଳ ମଣିଖଣ୍ଡ । ୧୮୯୬ ଖ୍ରୀଷ୍ଟାବ୍ଦରେ ଏହି ମହାଯାତ୍ରା କବିତା ରାଜମାନ୍ୟ କୃଷ୍ଣପ୍ରିୟାଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲା । ଏପରି ଛନ୍ଦ ଇତିପୂର୍ବେ ଓଡ଼ିଆ ଭାଷାରେ ନ ଥିଲା । ଏହି କାବ୍ୟର ଭାବଭଙ୍ଗୀ ଏବଂ ବାକ୍ୟବିନ୍ୟାସ ଯୋଗୁଁ ରାଧାନାଥଙ୍କୁ ଧନାବେତେ ଷଟେକଟଙ୍କ ବିଷ ଦୃଷ୍ଟିରେ ପଡ଼ିବାକୁ ହୋଇଥିଲା ଏବଂ ସେଥି ଯୋଗୁଁ ତାଙ୍କର ବେତନ ବର୍ଗ ଛାଡ଼ ଦେବାକୁ ହୋଇଥିଲା । ତାଙ୍କର ଜଣେ ଅନୁ-ଗୃହୀତ ଯୁବକ ତାଙ୍କ ବିରୁଦ୍ଧରେ ଗୋପନରେ ଗଭର୍ଣ୍ଣମେଣ୍ଟଙ୍କୁ ରିପୋର୍ଟ ଦେଇ ଦେଶର ଏପରି କ୍ଷତି ଘଟାଇ ଥିଲା ।

୧୮୯୭ ଖ୍ରୀଷ୍ଟାବ୍ଦରେ ରାଧାନାଥଙ୍କୁ ରାୟ ବାହାଦୁର ପଦ ମିଳି-ଥିଲା । ଏଥିନିମିତ୍ତ ଓଡ଼ିଶାରେ ନାନା ସ୍ଥାନରେ ସମ୍ବର୍ଦ୍ଧନା ସଭା ମଧ୍ୟ ଡକା ଯାଇଥିଲା । ରାଧାନାଥଙ୍କୁ ଏହି ଉପାଧିର ସନନ୍ଦ କଲିକତା ଯାଇ ବେଲଭେଡ଼ିୟର ଦରବାରରୁ ଆଣିବାକୁ ହେବ ବୋଲି ହୁକୁମ ଆସିଲା । ରାଧାନାଥ ଯିବାକୁ ମନା କରିବାରୁ ସନନ୍ଦ ଖଣ୍ଡି କମିଶନରଙ୍କ ପାଖକୁ ଆସିଥିଲା ଏବଂ ତାଙ୍କଠାରୁ ରାଧାନାଥ ତାହା ଆଣିଥିଲେ ।

୧୮୯୮ ସାଲରେ ପୁରୀ ଦେଉଳ ମରାମତି କାମ ପାଇଁ ଉତ୍କଳର ବହୁ ପ୍ରତିଷ୍ଠିତ ଲୋକ ଏକ କମିଟି ଗଢ଼ିଥିଲେ । ରାଧାନାଥ ସେଥିରେ ଯୋଗ ଦେଇଥିଲେ । ସେହି ବର୍ଷ ସେ ତୁଳସୀ ସ୍ତବକ ପ୍ରକାଶ କରିଥିଲେ ।

୧୮୯୭ ଓ ୧୮୯୮ ରେ ରାଧାନାଥ ବ୍ୟାକରଣ ପ୍ରବେଶ, ବ୍ୟାକରଣ ପରିଚୟ ଓ ପଣକିଆ ବୋଧିନୀ ବନ୍ଧମାନ ଛପାଇ ଥିଲେ ।

୧୮୭୭ ସାଲରେ ସମଗ୍ର ଓଡ଼ିଶାରେ ଛାତ୍ର ସଂଖ୍ୟା ଥିଲା ୩୯୫୪୭ କିନ୍ତୁ ୧୯୦୦ ଖ୍ରୀଷ୍ଟାବ୍ଦକୁ ଏହି ସଂଖ୍ୟା ହୋଇଥିଲା ୧୩୮୫୨୫ । ଏତିକିରୁ ରାଧାନାଥଙ୍କ ଶିକ୍ଷା ବିଭାଗୀୟ କାମରେ ପ୍ରସନ୍ନ ଜଣା ପଡ଼ିବ । ମହାଯାତ୍ରା କାବ୍ୟ ନେଇ ତାଙ୍କ ସମ୍ପର୍କରେ ଯେଉଁ ଗଣ୍ଡଗୋଳ ଘଟିଥିଲା ତାହା ସମାଧାନ ହୋଇଗଲାରୁ ତାଙ୍କୁ ବର୍ଦ୍ଧମାନ ବିଭାଗର ଇନ୍‌ସପେକ୍ଟର ଭାବରେ ୧୯୦୦ ଖ୍ରୀଷ୍ଟାବ୍ଦରେ ବଦଳି କରି ଦିଆଗଲା ।

ପ୍ରଥମେ ଜଣେ ଅଳ୍ପ ପାଠୁଆ ଓଡ଼ିଆକୁ ଉଚ୍ଚ ପଦରେ ଅଧିଷ୍ଠିତ ଦେଖି ଶିକ୍ଷକ ତଥା ଛାତ୍ରମାନେ ବେଖାତର କରୁଥିଲେ; ମାତ୍ର ପରେ ତାଙ୍କର ପାଣ୍ଡିତ୍ୟ ଦେଖି ମୁଗ୍ଧ ହୋଇଥିଲେ । ବର୍ଦ୍ଧମାନର ଇନ୍‌ସପେକ୍ଟର ହିସାବରେ ତାଙ୍କୁ ବଙ୍ଗ ତଥା ଭାରତ-ବର୍ଷର ଅନେକ ଗଣ୍ୟମାନ୍ୟ ବ୍ୟକ୍ତିଙ୍କର ସ୍କୁଲ ସମ୍ପର୍କୀୟ ବିବାଦ ନିଷ୍ପତ୍ତି କରିବାକୁ ପଡ଼ୁଥିଲା । ସେ ଯେଉଁଠାକୁ ଯାଉଥିଲେ ସର୍ବତ୍ର ନିଜକୁ ଓଡ଼ିଆ ବୋଲି ପରିଚୟ ଦେଉଥିଲେ ।

୧୯୦୧ ଖ୍ରୀଷ୍ଟାବ୍ଦରେ ରାଧାନାଥ ନିଜର ଦୁଇ ପୁତ୍ର ଶଶୀଭୂଷଣ ଓ ରଜନୀଭୂଷଣଙ୍କ ବିବାହ କାର୍ଯ୍ୟ ଶେଷ କରିଥିଲେ । ଶଶୀଭୂଷଣ ବାତରୋଗୀ ହୋଇ ଚିରକାଳ ସାହିତ୍ୟ ସେବାରେ କଟାଇ ଅଳ୍ପଦିନ ତଳେ କଟକରେ ମୃତ୍ୟୁ ଲଭି ଅଛନ୍ତି । ରଜନୀଭୂଷଣ ସବରେଜିଷ୍ଟ୍ରାର କାମ କରୁ କରୁ କେତେ ବର୍ଷ ପୂର୍ବରୁ ମାରି ପଡ଼ିଥିଲେ । ତାଙ୍କ ପରି ସତ୍ ସବ୍‌ରେଜିଷ୍ଟ୍ରାର ବିହାର ଓଡ଼ିଶାରେ ନ ଥିଲେ ବୋଲି ବିଭାଗୀୟ ବଡ଼ ସାହେବ ମନ୍ତବ୍ୟ କରିଥିଲେ । ନିଜର ଜୀବନରେ ରାଧାନାଥ

ସେପରି ସରଳ ଓ ଅମାୟିକ ଥିଲେ ସେହିପରି ଗୁଣୀର ଆଦର କରୁଥିଲେ । ସେ କେବେ ହେଲେ ତାଙ୍କର ଅଧୀନସ୍ଥ କର୍ମଚାରୀଙ୍କୁ ଅଶିଷ୍ଟ ବ୍ୟବହାର କରି ନ ଥିଲେ ଏବଂ ବିଲାତ ଶିକ୍ଷାରେ ପରମ ପଣ୍ଡିତ ହୋଇ ସୁଦ୍ଧା ପାଶ୍ଚାତ୍ୟ ସଭ୍ୟତାର ଅନୁକରଣ କରି ନ ଥିଲେ । ତାଙ୍କ ବାକ୍ୟ ଓ କାର୍ଯ୍ୟରେ ସବୁବେଳେ ସାମଞ୍ଜସ୍ୟ ରହୁଥିଲା ।

୧୮୯୪ ଖ୍ରୀଷ୍ଟାବ୍ଦରେ ଦିନେ ଦ୍ୱିପ୍ରହରକୁ ଜଣେ ଦରିଦ୍ର ବିଧବା ତାଙ୍କୁ ସାହାଯ୍ୟ ଭିକ୍ଷା ପାଇଁ ଆସିଥିଲା । ବିଧବାର ଘର ଖଣ୍ଡି ପୋଡ଼ି ଯାଇଥାଏ ଏବଂ ୨ ଦିନ ହେଲା କିଛି ଖାଇ ନ ଥାଏ । ବଖରାଏ ଘର ତୋଳିବା ପାଇଁ ଟ୬ । ୭ଙ୍କା ଭିକ୍ଷା ମାଗିଲା । ରାଧାନାଥ ତାହା ହାତରେ ଖଣ୍ଡିଏ ଚିଠି ଦେଇ ପୁଅ ଶଶୀଭୂଷଣଙ୍କ ପାଖକୁ ପଠାଇଲେ । ଚିଠିରେ ବିଧବାକୁ ଟ୧୦ଙ୍କା ଦେବାକୁ ଲେଖିଥିଲେ । ଶଶୀଭୂଷଣ ଟ୧୦ଙ୍କା ଦେବାରୁ ବୁଢ଼ୀ ତାହା ନେଲା ନାହିଁ । କହିଲା, "ମୁଁ ତ ୭ । ୮ ଟଙ୍କା ମାଗିଥିଲି ୧୦ ଟଙ୍କା ନେବି କାହିଁକି ?" ବୁଢ଼ୀ ଫେରି ଯାଇ ରାଧାନାଥଙ୍କୁ ଏ କଥା କହିଲା । ରାଧାନାଥ ଏହା ଶୁଣି କହିଲେ, "ହଁ, ମୋ ଲେଖିବା ଭୁଲ୍ ହୋଇଥିଲା, ପୁଣି ଖଣ୍ଡିଏ ଲେଖି ଦେଉଛି ନେଇଯାଅ ।" ଏଥର ଚିଠିରେ ସେ ପୁଅ ପାଖକୁ ୨୦ ଟଙ୍କା ଦେବାକୁ ନିର୍ଦ୍ଦେଶ ଦେଇଥିଲେ ଏବଂ ବିଧବାକୁ କହିଥିଲେ, "ତୁମେ ଧର୍ମର ସଳଖ ବାଟରେ ଚାଲିବାକୁ ଶିଖିଛ ବୋଲି ମୁଁ ତୁମକୁ ତୁମ ମାଗୁଣିଠାରୁ ବେଶୀ ଦେଲି । ଏଥିରେ ଦୁଇ ବଖରା ଘର ଓ ଢେଙ୍କୀଶାଳ ବନାଇବ ।"

ବଡ଼ କାମରେ ଥାଇ ଭଲ ଦରମା ପାଉଥିଲେ ମଧ୍ୟ ରାଧାନାଥଙ୍କ ମନ ସତତ ସଂସାର ପ୍ରତି ଉଦାସୀନ ଥିଲା । ସେ ଧନ ସମ୍ପତ୍ତିରେ ନିଜକୁ ଭୁଲି ନ ଥିଲେ । ସେ ତାଙ୍କର ଜୀବନର ଆଦର୍ଶକୁ ନିମ୍ନଲିଖିତ କବିତାରେ ପ୍ରକାଶ କରି ଅଛନ୍ତି:—

"ଯାବ ଭାଗ୍ୟ ମୋର ପିହୁଡ ପାଷାଣେ,
ମୋ ଜୀବନ ଗଢ଼ା ଅନ୍ୟ ଉପାଦାନେ ।
ସୁଖ ବୋଲି ଯାହା ଜନ ନେଉଛେ ଦଣ୍ଡେ,
ହାତେ ଅସେ ତାକୁଁ ପଡ଼ିବା ପାଇଁ ସେ ।
ବସ୍ତୁ ନୁହଇଟି ଅଟଇ ଭ୍ରମେ ଧୂମ,
ଅନ୍ୟ ନାମ ତାର ଆକାଶକୁସୁମ ।
ସଂସାରେ ଥାଇ ମୁଁ ସଦା ଉଦାସୀନ,
ଉଦାସୀନ ପ୍ରାୟେ କଟାଇଲି ଦିନ ।
ସଂସାରୀ ସଙ୍ଗତେ ସଙ୍ଗୀ ହେବା ପାଇଁ,
କେବେହେଁ ମୋହର ମନ ବଳେ ନାହିଁ ।"

ରାଧାନାଥଙ୍କ ଅମଳରେ ଓଡ଼ିଶାର ଗଡ଼ଜାତ ରାଜାମାନେ ଉତ୍କଳ ସାହିତ୍ୟର ଭକ୍ତ ଓ ଉପାସକ ଥିଲେ । ରାଜାମାନଙ୍କ ପାଖରେ ଅନେକ ବଡ଼ ବଡ଼ ପଣ୍ଡିତ ମଧ୍ୟ ରହୁଥିଲେ । ରାଜାମାନେ ମଧ୍ୟ ରାଧାନାଥଙ୍କୁ ଯଥେଷ୍ଟ ଶ୍ରଦ୍ଧା ଭକ୍ତି କରୁଥିଲେ । ତଥାପି ରାଧାନାଥ ମୋହବଶରେ ଭୁଲି ରାଜାମାନଙ୍କର ଦୋଷ ଘୋଡ଼ାଇ ନ ଥିଲେ । ସେ ତାଙ୍କର ଦରବାର କାବ୍ୟରେ ଓଡ଼ିଶା ରାଜାଙ୍କୁ ଲକ୍ଷ୍ୟ କରି ଯେଉଁ କଟୁ ଉକ୍ତି କରିଥିଲେ ତାହା ଏ ଯୁଗରେ ସୁଦ୍ଧା ଅସମ୍ଭବ । ସେ ରାଜାଙ୍କୁ ଲେଖିଥିଲେ:—

"ଦେଇଅଛ ଭୋଜେ କେତେ ମାଂସ ସୁରା,
ତା'ପାଇଁ କଡ଼ାଏ ନୋହିବ ମଜୁରା ।
ଦେଇଅଛ ଡାଲି ଭରି ମେଓ୍ୱା ନାନା,
କେତେ ଥର ଦେଇଅଛ ନାଚଖାନା ।
ଦୁଃଖୀ ରଙ୍କି ଜଣ୍ଡି ଚିପି ବାରମ୍ବାର
ଦାତାପଣ କେତେ କରିଛ ପ୍ରଚୁର ।

ସୁଜ୍ଞଜନେ ତୁମ୍ଭ ନାଟ ଦେଖି ଭାବା,
ଜନତା କୁହାଟେ ବାହାବା ବାହାବା ।
ମନେ ନାହିଁ ତୁମ୍ଭେ କାହାର ସନ୍ତାନ,
କେଶରୀ ଔରସେ ତୁମ୍ଭେ ଛିନା ଶ୍ୱାନ ।’’

ରାଧାନାଥ ନିଜେ ଯେପରି ପୁତ୍ରବତ୍ସଳ ଥିଲେ ତାଙ୍କର ସ୍ତ୍ରୀ ସେହିପରି ପତିବ୍ରତା ଥିଲେ । ରାଧାନାଥଙ୍କ ଜ୍ୟେଷ୍ଠ ପୁତ୍ର ଚିରରୋଗୀ ହେବାରୁ ସେ ପୁତ୍ରର ଆରୋଗ୍ୟ କାମନାରେ ମୁକ୍ତ ହସ୍ତରେ ଅର୍ଥ ବ୍ୟୟ କରି ସତତ ମ୍ରିୟମାଣ ରହୁଥିଲେ ଏବଂ ଏଇଥିପାଇଁ ସାହିତ୍ୟ ଚର୍ଚ୍ଚାରେ ଅଧିକ ଅଗ୍ରସର ହୋଇପାରି ନ ଥିଲେ । ପୁତ୍ରର ଏହି ବେମାରି ଯୋଗୁଁ ରାଧାନାଥ ପାର୍ବତୀ କାବ୍ୟ ପୂର୍ଣ୍ଣ କରିପାରି ନ ଥିଲେ । ପିଲାଦିନୁ ପୁତ୍ରକୁ ସଙ୍ଗରେ ନେଇ ସେ ଧବଳେଶ୍ୱର ଓ ନରାଜର ଗରିବ ନରନାରୀଙ୍କୁ ଜୋତା ଓ ଛତା ପ୍ରତି ବର୍ଷ ଖରାଦିନେ ବିତରଣ କରୁଥିଲେ । ଯେତେ ଛୋଟ ଲୋକ ହେଲେ ମଧ୍ୟ ରାଧାନାଥ ସମସ୍ତଙ୍କୁ ତୁମେ ଓ ଆପଣ ବୋଲି ସମ୍ବୋଧନ କରୁଥିଲେ ଏବଂ ବହୁ ଗରିବ ପରିବାରଙ୍କୁ ଗୋପନରେ ସାହାଯ୍ୟ କରୁଥିଲେ । ତାଙ୍କର ମୃତ୍ୟୁରେ ତାଙ୍କର ସ୍ତ୍ରୀ ଆମରଣ ସ୍ୱାମୀଙ୍କ କଠାଉ ପୂଜା କରୁଥିଲେ ଏବଂ ପୁତ୍ର ଶଶୀଭୂଷଣ ପିତାଙ୍କୁ ଦେବତାପରି ଚିରକାଳ ପୂଜା କରି ଆସୁଥିଲେ ।

ଓଡ଼ିଶାରେ ରାଧାନାଥଙ୍କର ଯାହା କିଛି ସ୍ମୃତି, ସମାଧି, ଶ୍ରାଦ୍ଧସଭା ସମସ୍ତ ଶଶୀଭୂଷଣ ନିଜେ କରିଅଛନ୍ତି । ପିତାଙ୍କ ସମାଧିରେ ପୁଷ୍ପ ଅର୍ପଣ କରିବା ତାଙ୍କର ଏକ ଦୈନନ୍ଦିନ କର୍ତ୍ତବ୍ୟ କର୍ମ ଥିଲା । ଶଶୀଭୂଷଣ ମରିବା ପୂର୍ବରୁ ରାଧାନାଥଙ୍କ ସମ୍ବନ୍ଧରେ ଖଣ୍ଡିଏ ନାଟକ ଲେଖିବା ଭାର ଏହି ନଗଣ୍ୟ ଲେଖକକୁ ଦେଇଥିଲେ; ମାତ୍ର ତାହା ଶେଷ ହେବା ପୂର୍ବରୁ ଶଶୀଭୂଷଣଙ୍କ ମୃତ୍ୟୁ ଘଟିଲା ଓ ନାଟକ ଖଣ୍ଡି ଅପୂର୍ଣ୍ଣ ରହିଗଲା ।

ଅଠଗଡ଼ର ସ୍ୱର୍ଗୀୟ ରାଜା ବିଶ୍ୱନାଥ ଯେତେବେଳେ ବଡ଼ଭାଇ ସହିତ ବିବାଦ କରି ସନ୍ନ୍ୟାସ ବ୍ରତ ନେଇ ଚାଲି ଯାଉଥିଲେ ରାଧାନାଥ ତାଙ୍କୁ ନାନାଦି ପ୍ରତିବାଧନା ଦେଇ କଟକରେ ରଖାଇ ସାହାଯ୍ୟ କରିଥିଲେ ଏବଂ ଅଳ୍ପଦିନ ପରେ ହଠାତ୍ ବଡ଼ ଭାଇ ନିସନ୍ତାନ ହୋଇ ମରିବାରୁ ବିଶ୍ୱନାଥ କଟକରୁ ରାଜପଦରେ ବରିତ ହୋଇ ଗଡ଼କୁ ଫେରିଗଲେ । ସେହିଦିନଠାରୁ ବିଶ୍ୱନାଥଙ୍କ ସହିତ ରାଧାନାଥଙ୍କର ଅପୂର୍ବ ବନ୍ଧୁତ୍ୱ ପ୍ରତିଷ୍ଠା ହୋଇଥିଲା ।

## କାଳୀଗଳି ବାସଭବନ

୧୮୯୩ ଖ୍ରୀଷ୍ଟାବ୍ଦ ମେ ମାସ ୧୦ ତାରିଖ ଦିନ ରାଧାନାଥ କାଳୀଗଳିର ନୂଆ କୋଠାକୁ ଆସିଲେ । ପୂର୍ବେ ଏଠାରେ ଜଣେ ଧନୀ ଲୋକଙ୍କର କୋଠା ଥିଲା ଏବଂ କାଳକ୍ରମେ ତାହା ଭାଙ୍ଗିଯାଇ ପଡ଼ିଆ ପଡ଼ିଥିଲା । ଲୋକେ ତାକୁ ନୀଳମଣି ପଡ଼ିଆ ବୋଲି ଡାକୁଥିଲେ । ଏଠାରେ ରାଧାନାଥଙ୍କର ପ୍ରିୟ ଛାତ୍ର ଏବଂ ପରେ ସ୍କୁଲ ଇନ୍‌ସପେକ୍ଟର ହୋଇଥିବା ମଧୁ ରାଓ ଜମି କିଣିଥିଲେ । ଗୁରୁ ଓ ଛାତ୍ର ଏକାଠି ରହିବେ ବୋଲି ରାଧାନାଥ ଏଠାରେ ଜମି କିଣି ଘର କରିଥିଲେ । ପରେ ମଧୁ ରାଓଙ୍କର ମୃତ୍ୟୁ ପରେ ତାଙ୍କର ସମାଧି ମଧ୍ୟ ରାଧାନାଥଙ୍କ ସମାଧି ପାଖରେ ସ୍ଥାପିତ ହୋଇଅଛି । କାଳକ୍ରମେ ରାଧାନାଥଙ୍କର ବାସଗୃହର ରାସ୍ତା ମଣ୍ଡଳ ଗଳିରୁ ନୀଳମଣି ପଡ଼ିଆ ଓ ପରେ କାଳୀ ମନ୍ଦିର ହେବାରୁ କାଳୀଗଳିରେ ପରିଣତ ହୋଇଅଛି ।

୧୯୦୨ ସାଲରେ ତ୍ରିବାଙ୍କୁଡ଼ର ମହାରାଜା ସାର୍ ରାମ ବର୍ମା ଦିଲ୍ଲୀ ଦରବାରକୁ ଯିବାବେଳେ କଟକ ଷ୍ଟେସନ ପାଖ ବର୍ଦ୍ଧମାନ କୋଠିରେ ଦୁଇ ଦିନ ରହିଥିଲେ । ତାଙ୍କର ନିୟମ ଥିଲା ଯେ ସେ ଯେଉଁଠାରେ ରହଣି କରିବେ ସେଠାରେ ନୂଆ କୂଅ କିମ୍ବା ପୋଖରୀ ଖୋଳାଇ ସେହି ପାଣି ବ୍ୟବହାର କରିବେ । ଏଥି ଯୋଗୁଁ ୬ ମାନ

ପୂର୍ବରୁ ତାଙ୍କ ମାର୍ଗର ନଅଣି ସ୍ଥାନରେ ବହୁତ କୂଅ ପୋଖରୀ ଖୋଳା ହୋଇଥିଲା । ବର୍ଦ୍ଧମାନ କୋଠି ଭିତରେ ଥିବା ପୋଖରୀର ଇତିହାସ ଏହାହିଁ ଅଟେ । କଟକରେ ରହିଲାବେଳେ ମହାରାଜା ରାଧାନାଥଙ୍କର ଗୁଣ ଗ୍ରାମ ଶୁଣି ହଠାତ୍ ହଠାତ୍ ଅଯାଚିତଭାବେ ତାଙ୍କ କାଳୀଗଳି ବସାରେ ଉପସ୍ଥିତ ହେଲେ । ଏହି ସ୍ୱପ୍ନାତୀତ ସମ୍ମାନ ପାଇ ରାଧାନାଥ ଲଜ୍ଜିତ ହୋଇ ଅଭ୍ୟର୍ଥନା କରିବାକୁ ଖାଲି ଦେହରେ ଧାଇଁ ଆସିଲେ । ତାଙ୍କ ଘରେ କିରୀଟ କୁଣ୍ଡଳ ପୂର୍ବ ରାଜା ରବି ବର୍ମାଙ୍କ ଅଙ୍କିତ ଅନେକ ଚିତ୍ର ଥାଏ । ରାଧାନାଥ ତାହାହିଁ ଦେଖାଇ ରାଜ-ବଂଶକୁ ପୂଜା କରନ୍ତୁ ବୋଲି କହିବାରୁ ମହାରାଜ କହିଲେ, "ମୁଁ ପୂଜା ପାଇବାକୁ ଆସି ନାହିଁ । ଗୁଣୀ ବ୍ୟକ୍ତିକୁ ଅର୍ଘ୍ୟ ଦେବାକୁ ଆସିଛି ।"

ଏହି ବର୍ଷ ରାଧାନାଥଙ୍କ ପ୍ରଣୀତ ବଙ୍ଗଳା ଲେଖାବଳୀ ଓ କାଳିଦାସ ସ୍ୱରୂପ ନାମକ ଦୁଇ ଖଣ୍ଡ ବହି ପ୍ରକାଶିତ ହୋଇଥିଲା ।

ମହାଯାତ୍ରାକୁ ସମ୍ପୂର୍ଣ୍ଣ କରିବାକୁ ରାଧାନାଥଙ୍କୁ ଶତ ଶତ ବ୍ୟକ୍ତି ଅନୁରୋଧ କରି ପତ୍ର ଲେଖିଥିଲେ । ସରକାରୀ ତଦନ୍ତବେଳେ ମହାଯାତ୍ରାର ୫ ସର୍ଗର ଲେଖା ଏବଂ ଶେଷ ୧୮ ସର୍ଗର ଖସଡ଼ା ନିଆଁରେ ପୋଡ଼ିଦେବାକୁ ପଡ଼ିଥିଲା । ପୁଣି ବେମାରି ଓ ଅନ୍ୟ ଅନେକ ଅସୁବିଧାରୁ ରାଧାନାଥ ଆଉ ମହାଯାତ୍ରା ପୂର୍ଣ୍ଣ କରିପାରି ନ ଥିଲେ ।

ରାଧାନାଥଙ୍କ କବିତା ରଚନାର ପ୍ରକୃଷ୍ଟ ସମୟ ଥିଲା ବଳଦ ଗାଡ଼ିରେ ସ୍କୁଲ୍ ପରିଦର୍ଶନ କରି ଗଲାବେଳେ ବାଟରେ କିମ୍ବା ଡାକ ବଙ୍ଗଳାରେ । ଉଷା ଓ ମହାଯାତ୍ରାର ସପ୍ତମ ସର୍ଗ ଏହିପରି ଗସ୍ତ କାଳରେ ରଚିତ ।

## ଅବସର ଗ୍ରହଣ

୧୯୦୩ ସାଲ ସେପ୍ଟେମ୍ବର ମାସରେ ରାଧାନାଥ ସରକାରୀ କାର୍ଯ୍ୟରୁ ପେନସନ୍ ନେଇ କଟକକୁ ଫେରି ଆସିଲେ । ଏହି ବର୍ଷ ସମସ୍ତ ଓଡ଼ିଆଭାଷୀ ଅଞ୍ଚଳ ଏକୀକରଣ ନିମିତ୍ତ ଖଲ୍ଲିକୋଟ ରାଜା, ନୀଳମଣି ବିଦ୍ୟାରତ୍ନ, ଜୟକୃଷ୍ଣ ଚଉଧୁରୀମାନଙ୍କ ପ୍ରମୁଖ ଉତ୍କଳ ସମ୍ମିଳନୀ ବସାଇଥିଲେ । ଏହି ସମ୍ମିଳନୀର ସୂତ୍ରପାତ ଖଲ୍ଲିକୋଟ ରାଜାଙ୍କ ଉଦ୍ୟମରେ ହୋଇଥିଲେ ମଧ୍ୟ ୩୦।୧୨।୧୯୦୩ ତାରିଖରେ କଟକରେ ହେଲା । ବହୁ ରାଜା ମହାରାଜା ଏଥିରେ ଯୋଗ ଦେଇଥିଲେ ଏବଂ ମୟୂରଭଞ୍ଜର ମହାରାଜା ପ୍ରଥମ ସଭାପତି ହୋଇଥିଲେ । ଏହି ସଭାର ପୂର୍ବ ଦିନ ଭିକ୍ଟୋରିଆ ସ୍କୁଲରେ ଉତ୍କଳ ସାହିତ୍ୟ ସମାଜ ସ୍ଥାପିତ ହୋଇଥିଲା । ରାଧାନାଥ ସଭାପତି ହୋଇଥିଲେ । ଉତ୍କଳ ସମ୍ମିଳନୀ ନିମିତ୍ତ ସେ ଜାତୀୟ ସଙ୍ଗୀତ ରଚନା କରି ଦେଇଥିଲେ । ପ୍ରଥମ ସମ୍ମିଳନୀ ହୋଇଥିଲା କଟକ ଇଦଗା ପଡ଼ିଆରେ । ଉତ୍କଳର ମଧୁବାବୁ ସେତେବେଳେ ତରୁଣ ବିଳାତ ଫେରନ୍ତା ଓକିଲ ଏବଂ ସେ ସମ୍ମିଳନୀକୁ ସବୁ ପ୍ରକାରେ ସମୟ ଉପଯୋଗୀ କରିଥିଲେ ଏବଂ ଏହି ସମ୍ମିଳନୀ ଯୋଗୁ ୨ ବର୍ଷ ପରେ ମଧ୍ୟପ୍ରଦେଶ, ଛୋଟନାଗପୁରର କେତୋଟି ଦେଶୀୟ ରାଜ୍ୟ ଓ ସମ୍ବଲପୁର ଜିଲ୍ଲା ଓଡ଼ିଶା ସହିତ ମିଶିଥିଲା ।

## ମୃତ୍ୟୁ

ସରକାରୀ କାମରୁ ପେନସନ୍ ଗ୍ରହଣ କଲା ପରେ ରାଧାନାଥ ଘରେ ସ୍ଥିର ହୋଇ ନ ରହି ଉତ୍କଳର ପ୍ରାକୃତିକ ଶୋଭା ଦେଖିବା ନିମିତ୍ତ ଗଡ଼ଜାତମାନ ଭ୍ରମଣ କରୁଥିଲେ । ଏହି ସୁଯୋଗରେ ସେ ଓଡ଼ିଶାର ନଦନଦୀ, ପର୍ବତ ପାହାଡ଼ ଓ ବଣିଜ୍ୟ ସ୍ଥାନମାନ ପରିଭ୍ରମଣ କରିଥିଲେ । ସମଗ୍ର ଓଡ଼ିଶାର ଭୂଗୋଳ ତାଙ୍କ ଆଖି ଆଗରେ

ଖେଳୁଥିଲା । ଏହାର ନମୁନା ସେ ପାର୍ବତୀ କାବ୍ୟରେ ଏବଂ ଚିଲିକାରେ ଦେଖାଇଅଛନ୍ତି ।

ଗଡ଼ଜାତ ଭ୍ରମଣରେ ଗଲାବେଳେ ସେଠାର ରାଜାମାନେ ତାଙ୍କୁ ଅତିଶୟ ଆନ୍ତରିକତା ଓ ସମ୍ମାନର ସହିତ ଅଭ୍ୟର୍ଥନା କରୁଥିଲେ ଏବଂ ତାଙ୍କ ସହିତ ସାହିତ୍ୟ ଚର୍ଚ୍ଚା କରୁଥିଲେ ।

୧୯୦୮ରେ ଏହି ଭ୍ରମଣ ଉଦ୍ଦେଶ୍ୟରେ ଗଲାବେଳେ ରାଧାନାଥ ଶଶୀଭୂଷଣଙ୍କୁ ସାଙ୍ଗରେ ନେଇ ଧବଳେଶ୍ୱରଠାରୁ ବାହାରିଥିଲେ । ସେ ପ୍ରଥମେ ତାଳଚେର ଯାଇ ସେଠାରେ ଦୀର୍ଘ ଦେଢ଼ ମାସ ରହି ପାଲଲହଡ଼ା ଗଲେ । ପାଲଲହଡ଼ା ରାଜା ମାର୍ଚ୍ଚ ୨୪ ତାରିଖ ଦିନ ଏକ ଦରବାର କରି ତାଙ୍କୁ ଅଭିନନ୍ଦନ କରିଥିଲେ ।

ପାଲଲହଡ଼ାରେ ଥିଲାବେଳେ ବାମଣ୍ଡା ରାଜାଙ୍କ ନିମନ୍ତ୍ରଣ ପାଇ ବାମଣ୍ଡା ଯାତ୍ରା କଲେ । ବାଟରେ ବାରକୋଟ ଗ୍ରାମରେ ଦୁଇ ଦିନ ରହି ଦେବଗଡ଼ରେ ପହଞ୍ଚିଥିଲେ । ବାମଣ୍ଡା ରାଜା ତାଙ୍କୁ ପାଇ ପ୍ରାୟ ଏକ ସପ୍ତାହ କାଳ ନାନାବିଧ ସାହିତ୍ୟ ଚର୍ଚ୍ଚାରେ କଟାଇଥିଲେ । ଦେବଗଡ଼ଠାରୁ ରାଧାନାଥ ରେଳ ପଥରେ କଟକ ଫେରିଲେ । ଦେବଗଡ଼ଠାରୁ ରେଳ ଷ୍ଟେସନର ଦୂରତ୍ୱ ଥିଲା ପ୍ରାୟ ୬୦ ମାଇଲ । ରାଜା ସାହେବ ତାଙ୍କର ସମସ୍ତ ସୁବିଧା କରିଦେଇଥିଲେ ମଧ୍ୟ ବାଟରେ ତାଙ୍କର ନାଲରକ୍ତ ଝାଡ଼ା ହେଲା । ହେଥିନିମିତ୍ତ ସେ ବଡ଼ କଷ୍ଟ ପାଇ ଶେଷକୁ ଗୋବିନ୍ଦପୁରଠାରୁ ରେଳ ଯୋଗେ କଟକ ଫେରିଥିଲେ । ଅପ୍ରେଲ ୭ ତାରିଖ ଦିନ କଟକରେ ପହଞ୍ଚିଥିଲେ ଏବଂ ଦୁଇ ତିନିଦିନ ପୂର୍ଣ୍ଣ ବିଶ୍ରାମ ନେଇଥିଲେ । ସେତେବେଳେ ତାଙ୍କୁ ଅଳ୍ପ ଜ୍ୱର ବରାବର ଲାଗି ରହିଥିଲା । କଟକର ବଡ଼ ବଡ଼ ଡାକ୍ତରମାନେ ତାଙ୍କର ଚିକିତ୍ସା କରିଥିଲେ । ଅପ୍ରେଲ ୧୬ ତାରିଖ ଦିନ ସେ ଶଶୀଭୂଷଣଙ୍କୁ କହିଥିଲେ

ସେ ଦେହ ଟିକିଏ ଭଲ ହେଲେ ଧବଳେଶ୍ୱର ଯାଇ ସେଠାରେ ରହିବେ । ମାତ୍ର ତାଙ୍କର ସେ ଇଚ୍ଛା ପୂରଣ ହୋଇ ପାରିଲା ନାହିଁ । ସେହିଦିନ ରାତି ୮ଟାରେ ତାଙ୍କର ଦୁର୍ବଳତା ବଢ଼ିଗଲା ଏବଂ ରାତି ୧୨ଟା ପରେ ତାଙ୍କର ମୃତ୍ୟୁ ଘଟିଲା । ସେଦିନ ତିଥି ଥିଲା ଚୈତ୍ର ପୂର୍ଣ୍ଣିମା । ୧୭ ତାରିଖ ସୂର୍ଯ୍ୟୋଦୟ ଉତ୍ତାରୁ ରାଧାନାଥଙ୍କୁ ଦାହ କରାଯାଇଥିଲା ।

ରାଧାନାଥଙ୍କ ମୃତ୍ୟୁରେ ଓଡ଼ିଶାର ପ୍ରତିପଲ୍ଲୀରେ ଏବଂ ବଙ୍ଗ ଦେଶରେ ଶୋକର ଛାୟା ଖେଳିଗଲା । ଅସଂଖ୍ୟ ଶୋକ ସଭା ସର୍ବତ୍ର ଅନୁଷ୍ଠିତ ହୋଇଥିଲା ଏବଂ ସମସ୍ତ ସମ୍ବାଦପତ୍ର ଏକ ବାକ୍ୟରେ ଶୋକ ପ୍ରକାଶ କରି ଲେଖିଥିଲେ ଉତ୍କଳ ଭାରତୀଙ୍କର ଶ୍ରେଷ୍ଠ ସନ୍ତାନ ଚାଲିଗଲେ ।

ମାତ୍ର ଯେଉଁମାନେ କର୍ମୀ, ତ୍ୟାଗୀ, ସାଧକ, ସେମାନେ ଯୁଗେ ଯୁଗେ ଅମର । ଏଥି ନିମିତ୍ତ ରାଧାନାଥ ଆମ ଦେଶରେ ଚିରକାଳ ଅମର ହୋଇ ରହିବେ ଏବଂ ତାଙ୍କର ସତ୍ୟପ୍ରିୟତା, ପରୋପକାର ବ୍ରତ ଓ ଦୋଷ ସ୍ୱୀକାରର ନିର୍ଭୀକତା ଓଡ଼ିଆ ଜାତିକୁ ଚିରକାଳ ଆଲୋକ ଦେଖାଉ ଥିବ ।

## ରାଧାନାଥଙ୍କ ଅବଦାନ

ଭଞ୍ଜ ଯୁଗ ପରେ ଉତ୍କଳରେ ଉତ୍କଳ ଭାରତୀର ଅନ୍ୟ କେହି ଉପାସକ ନ ଥିଲେ । ବହୁକାଳ ସାହିତ୍ୟ ଭାରତୀ ଅପୂଜା ପଡ଼ି ରହିଥିଲେ । ଭାଷା ଓ ସାହିତ୍ୟର ସମୃଦ୍ଧି ନ ହେଲେ ଦେଶ ଓ ଜାତିର ଅଗ୍ରଗତି ଅସମ୍ଭବ । ପୁଣି ଏହି ସାହିତ୍ୟକୁ ପ୍ରାଚୀନତା ସହିତ ନୂତନର ସାଜ ସଜାରେ ସମୃଦ୍ଧ କରିବା କଥା । ଦୁଃଖର କଥା ଓଡ଼ିଆ ଭାଷା ଓ

ସାହିତ୍ୟର ମୁମୂର୍ଷୁ ଦଶା ବେଳେ ଉତ୍କଳ ଗଗନରେ ଆବିର୍ଭୂତ ହୋଇଥିଲେ ରାଧାନାଥ ଏବଂ ତାଙ୍କ ସାଙ୍ଗକୁ ଫକୀର ମୋହନ ଓ ମଧୁସୂଦନ । ଏହି ତିନି ଜଣ ଉତ୍କଳରେ ପୁଣି ସାହିତ୍ୟର ନବୀନ ସୂଚନା କରି ତ୍ରିବେଣୀ ଧାର ବୁହାଇ ଥିଲେ ଏବଂ ଏହାଙ୍କ ପରେ ଆଉ ଅନେକ ସୁସନ୍ତାନ ମାତୃ ଭାଷାର ସେବାରେ ବ୍ରତୀ ହୋଇଥିଲେ । ଏଥି ନିମିତ୍ତ ରାଧାନାଥଙ୍କୁ ଆଧୁନିକ ଓଡ଼ିଆ ସାହିତ୍ୟର ଜନ୍ମଦାତା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ପ୍ରାଚୀନ ଉତ୍କଳ ସାହିତ୍ୟର ମହାନ୍ ସମ୍ଭାରକୁ ରାଧାନାଥ ପୁଣି ନୂତନ ମାର୍ଗରେ ପ୍ରବାହିତ କରି ଓଡ଼ିଆ ଜାତିର ଚିରସ୍ମରଣୀୟ ହୋଇ ରହିଅଛନ୍ତି । ତାଙ୍କର ପ୍ରଣୀତ ସମସ୍ତ ବହି ଆଦି ଗ୍ରନ୍ଥାବଳୀ ଆକାରରେ ପ୍ରକାଶିତ ହୋଇ ଓଡ଼ିଆ ଛାତ୍ରଛାତ୍ରୀ ଏବଂ ଜନସାଧାରଣଙ୍କୁ ବିବିଧ ଶିକ୍ଷା ଏବଂ ଅପାର ଶାନ୍ତି ଆନନ୍ଦ ଦେଉଅଛି ।



ମୁଦ୍ରାକର—ଶ୍ରୀ ପଦ୍ମଚରଣ ଦାସ, ଶ୍ରୀ ସତ୍ୟନାରାୟଣ ପ୍ରେସ, କଟକ—୨

ପ୍ରାଇଜ୍ ଓ ଲାଇବ୍ରେରୀ ଉପଯୋଗୀ

ଉତ୍କଳ ପ୍ରକାଶନୀର ଶ୍ରେଷ୍ଠ ଅବଦାନ

# ଅମର ଜୀବନୀମାଳା

ଲେଖକ :—ଲଲ ନଗେନ୍ଦ୍ର କୁମାର ରାୟ

ବୁଦ୍ଧଦେବ

ଠାକୁର ଶ୍ରୀରାମକୃଷ୍ଣ ପରମହଂସ

ଶ୍ରୀ ଚୈତନ୍ୟ

ଖାରବେଳ

ଗଜପତି ପ୍ରତାପରୁଦ୍ର

ଯଯାତିକେଶରୀ

କୁଳବୃଦ୍ଧ ମଧୁସୂଦନ

କର୍ମବୀର ଗୌରୀଶଙ୍କର

ମାଇକେଲ ମଧୁସୂଦନ

ଈଶ୍ୱରଚନ୍ଦ୍ର ବିଦ୍ୟାସାଗର

କବିବର ରାଧାନାଥ ରାୟ

ସାମନ୍ତ ଚନ୍ଦ୍ରଶେଖର

ସାର୍ ଅଶୁତୋଷ

ଉତ୍କଳମଣି ଗୋପବନ୍ଧୁ

ମହାତ୍ମା ଗାନ୍ଧୀ

ପ୍ରତ୍ୟେକ ଖଣ୍ଡର ମୂଲ୍ୟ ଦଶଅଣା

ଅନ୍ୟାନ୍ୟ ଜୀବନୀ ଶୀଘ୍ର ପ୍ରକାଶ ପାଇବ

ପ୍ରାପ୍ତିସ୍ଥାନ :—

ଦି ଉତ୍କଳ ଷ୍ଟୋର୍ସ

ବାଲୁବଜାର, କଟକ—୨